ପ୍ରକାଶକ :

ପ୍ରାଚୀ ପ୍ରକାଶନ
ଓଡ଼ିଆ ବଜାର . କଟକ

ପ୍ରଥମ ପ୍ରକାଶ—୧୯୮୭

ମୁଦ୍ରଣ :

ଶକ୍ତି ପ୍ରିଣ୍ଟର୍ସ
ଗୋପାଳଜୀ ଲେନ୍, କଟକ-୧

ମୂଲ୍ୟ : ଟ
(ଆଠ ଟଙ୍କା

# ଉତ୍ସର୍ଗ

ବାପା ଓ ମା'ଙ୍କ ଚରଣରେ..........।

—ବାସୁକୀ

# ମୋନାଲିସାର ହସର ନୂତନ ସଂସ୍କରଣ

ଏହି ନାଟକଟି ୧୯୬୮ ମସିହାରେ ଶ୍ରୀରାମଚନ୍ଦ୍ର ଭଞ୍ଜ ମେଡ଼ିକାଲ କଲେଜ House Staff Association ଦ୍ୱାରା ମେଡ଼ିକାଲ ରଙ୍ଗମଞ୍ଚରେ ମଞ୍ଚସ୍ଥ ହୋଇଥିଲା । ଏହାର ନିର୍ଦ୍ଦେଶନା ଦେଇଥିଲେ ଖ୍ୟାତନାମା ନିର୍ଦ୍ଦେଶକ ସ୍ୱର୍ଗତ କୃଷ୍ଣଚନ୍ଦ୍ର ସିଂ ଏବଂ ସଙ୍ଗୀତ ନିର୍ଦ୍ଦେଶନା ଦେଇଥିଲେ ଡାକ୍ତର ବାଦଲ ମହାନ୍ତି । ଯେଉଁମାନେ ଅଭିନୟ କରିଥିଲେ ସେମାନେ ସମସ୍ତେ ବର୍ତ୍ତମାନ ଖ୍ୟାତନାମା ଡାକ୍ତର ।

ଏହି ନାଟକଟିକୁ ଛପାଇଥିଲେ ସାଥୀ ମହଲ ଅନୁଷ୍ଠାନର ରାଧାଶ୍ୟାମ ମହାନ୍ତି । ଛପାହେଲା ପରେ ବହିଟି ଖୁବ୍ ଶୀଘ୍ର ଶେଷ ହୋଇଗଲା, ଏପରିକି ପ୍ରକାଶକ ଏବଂ ମୋ ପାଖରେ ମଧ୍ୟ ବହିରୁ ଖଣ୍ଡେ ରହିଲାନି । ତା'ପରେ ନୂତନ ସଂସ୍କରଣ କରିବାପାଇଁ ମୁଁ ବହିଟି ଖୋଜିଲି; କିନ୍ତୁ ବହିଟି କେଉଁଠି ମିଳିଲା ନାହିଁ ।

ଏବେ ବହିଟିର ପାଣ୍ଡୁଲିପିରୁ ଉଦ୍ଧାର କରି ମୁଁ ନୂତନ ପ୍ରକାଶକ ଆୟୁଷ୍ମାନ୍ ବୁଲୁ (ସାଥୀ ପ୍ରକାଶନୀ)କୁ ନୂତନ ସଂସ୍କରଣପାଇଁ ଦେଉଛି । ବୁଲୁର ବାପା ପୂର୍ଣ୍ଣ ବାବୁ ଯିଏ ମୋର ପନ୍ଦର ଖଣ୍ଡ ବହି ଛପାଇଛନ୍ତି ଆଜି ଆଉ ନାହାନ୍ତି । ବର୍ତ୍ତମାନ ବୁଲୁ ଉପରେ ସବୁ ଦାୟିତ୍ୱ । ସେ ପିଲାଲୋକ ହେଲେ ବି ତା'ର ନିଷ୍ଠା ଅଛି । ଆଶାକରେ ତା'ର ସୁଯୋଗ୍ୟ ପରିଚାଳନାରେ ଏହି ନାଟକର ନୂତନ ରୂପ ଆଗଠାରୁ ଆହୁରି ଭଲହେବ ।

ଗତ କେତେବର୍ଷ ହେଲା ଓଡ଼ିଶାର ନାଟ୍ୟପ୍ରେମୀମାନେ ଏହି ନାଟକଟିକୁ ଖୋଜିଖୋଜି ରାଧାଶ୍ୟାମ ବାବୁଙ୍କ ଦୋକାନକୁ ଫେରୁଥିଲେ । ବର୍ତ୍ତମାନ ସେମାନେ ଏହି ନାଟକଟିକୁ ସାଥୀ ପ୍ରକାଶନ ଓଡ଼ିଆ ବଜାର କଟକରୁ ପାଇପାରିବେ ।

ଏହି ନାଟକର ପାଣ୍ଡୁଲିପି ପ୍ରସ୍ତୁତ କରିବାରେ ଶ୍ରୀରାମଚନ୍ଦ୍ର ଭଞ୍ଜ ମେଡ଼ିକାଲ କଲେଜର ଛାତ୍ର ଶ୍ରୀ ପୂଣ୍ୟଶ୍ଲୋକ ଦାସ ଯେଉଁ ସାହାଯ୍ୟ ସହଯୋଗ କରିଛନ୍ତି ସେଥିପାଇଁ ମୁଁ ଚିରକୃତଜ୍ଞ ।

ନୂତନ ସଂସ୍କରଣରେ ସାମାନ୍ୟ ସମୟୋପଯୋଗୀ ସଂଶୋଧନ କରାଯାଇଛି । ନାଟ୍ୟାନୁଷ୍ଠାନମାନେ ଏହାକୁ ଗ୍ରହଣ କରିନେଇ ନାଟକ ମଞ୍ଚସ୍ଥ କରିବାକୁ ମୋର ଅନୁରୋଧ ।



# ଏହି ନାଟକର ସ୍ଥାନ, କାଳ ଓ ପାତ୍ର

ସ୍ଥାନ—ଦାର୍ଜିଲିଂର ସବୁଜ ପାଇନ ଛଦଡ୍ୟକା ଓ ସେଠିକାର ଅଭିଜାତ୍ୟ ସମାଜ ଜୀବନ ।

କାଳ—ଗୋଟିଏ ଏପ୍ରିଲରୁ ଆଉ ଗୋଟିଏ ଏପ୍ରିଲ ।

ପାତ୍ର—

ତୁଷାର—ଏକ ସମ୍ଭ୍ରାନ୍ତ ଜମିଦାର ପରିବାରର ଏକମାତ୍ର ସନ୍ତାନ । ଶିକ୍ଷିତ, ରୁଚିଶୀଳ, ଶିଳ୍ପୀ, ଉଚ୍ଚକୋଟୀର ବେହେଲା ବାଦକ ।

ମିଷ୍ଟର ଯାଚକ—ଯୁଦ୍ଧଫେରନ୍ତା ହୋଟେଲ ବ୍ୟବସାୟୀ । ବୟସ ଷାଠିଏ । ବର୍ତ୍ତମାନ ଏକ paying guest houseର ମାଲିକ ।

ଉଇଲିୟମ୍—ଯୁଦ୍ଧଫେରନ୍ତା ଟଙ୍ଗ (ଛଡ଼ି ବ୍ୟବହାର କରୁଥିବା) ବୟସ ପଞ୍ଚାବନ । ମଦ୍ୟପ ।

ଏଡ୍‌ଓ୍ୱାର୍ଡ୍—ଚରିତ୍ରବାନ, ଧର୍ମ ଖ୍ରୀଷ୍ଟିୟାନ୍ ଯୁବକ ।

ଯୋସେଫ୍—ଯାଚକଙ୍କ Guest houseର ଚାକର ।

ସରୋଜ—ଚାକିରିଖୋଜା ଯୁବକ । Guest houseର ଜଣେ ମେମ୍ବର ।

ରାଜୀବ—ଷିଅଲ ଲେଖକ । Guest houseର ଅନ୍ୟତମ ମେମ୍ବର, ଯୁବକ ।

ପ୍ରଦୀପ—ଚାକିରିଖୋଜା, ଯୁବକ । Guest houseର ଅନ୍ୟତମ ମେମ୍ବର ।

ମୋନାଲିସା—ଶିକ୍ଷିତା, ସୁନ୍ଦରୀ ଯୁବତୀ । ଯାଚକଙ୍କର ତଥା-କଥିତ କନ୍ୟା ।

ମିସେସ୍ ଖାନ୍—"ହୋଟେଲ ଦ'ଗ୍ରିନ୍"ର ମ୍ୟାନେଜର । ବୟସ ୩୦, ଅତ୍ୟାଧୁନିକା ସୁନ୍ଦରୀ ।





# ପ୍ରଥମ ଅଙ୍କ

## ପ୍ରଥମ ଦୃଶ୍ୟ

[ ଦାର୍ଜିଲିଂର ଏକ ସବୁଜ ଉପତ୍ୟକା । ଉପରେ ଇନ୍ଦ୍ରନୀଳ ଆକାଶର ପୃଷ୍ଠଭୂମିରେ ତୁଷାର ଆବୃତ କାଞ୍ଚନଜଙ୍ଘା । ଏକ ଲାଇଟ୍ ପୋଷ୍ଟର ସ୍ଲୁମ୍ପା ଅନ୍ଧକାର ମଧ୍ୟରେ ତୁଷାର ଏକାକୀ ଭାଓଲିନ୍‌ର ତାରରେ ଏକ ସିଂଫୋନି ଅର୍କେଷ୍ଟ୍ରାର ସ୍ୱର ତୋଳିଛି । ଏଇ ସମୟରେ ନେପଥ୍ୟ ଏକ କାର୍ ବ୍ରେକ୍‌କଷି ଛିଡ଼ା ହେବାର ଶବ୍ଦ । ସେଇ ଦିଗରୁ ଆସିଛି ମୋନାଲିସା । ଏକ ନିରୋଳା ପରିବେଶରେ ଭାଓଲିନର ସ୍ୱର ଶୁଣି ତନ୍ମୟା ହୋଇଯାଇଛି । ଧୀରେଧୀରେ ଭାଓଲିନ୍‌ର ବାଦକକୁ ଦେଖିବାପାଇଁ ସେ ଲାଇଟ୍ ପୋଷ୍ଟର ନିକଟକୁ ଆସିଛି । ତୁଷାରକୁ ଚହ୍ନି ପାରିଛି । ]

ଲିସା—ତୁଷାର ବାବୁ, ଆପଣ ଏଠି !!!

ତୁଷାର—(ସ୍ମିତହସ୍ତ ହୋଇ ଭାଓଲିନ ଲୁଚାଇବାର ଚେଷ୍ଟାକରି) ଲିସା, ତମେ ଏଇ ସନ୍ଧ୍ୟାରେ !

ଲିସା—କ୍ଲବରୁ ଫେରୁଥିଲି । ଗାଡ଼ିରେ ପାଣି ଦରକାର ହେବାରୁ ଏଇ ଝରଣାରୁ ପାଣି ଆଣିବ ପାଇଁ ଏଡ଼ଓ୍ୱାର୍ଡ ଯାଇଚନ୍ତି । ମୁଁ ଏଇ ଙ୍କରେଲାରେ ଭାଓଲିନର ମୂର୍ଚ୍ଛନା ଶୁଣି ଚାଲିଆସିଲି ।

ତୁଷାର—ଆସିଲ ଭଲ; କିନ୍ତୁ ମୁଁ ଭାଓଲିନ ବଜାଉଥିଲି ବୋଲି guest houseରେ କାହାରିକୁ କହିବ ନାହିଁ ।

ଲିସା—କାହିଁକି ? ଭାଓଲିନ ବଜେଇବା କ'ଣ ଗୋଟାଏ ଅପରାଧ ? ଆପଣ ଏତେ ଡରୁଚନ୍ତି କାହିଁକି ' ଆପଣ ଆମ guest houseରେ ରହିବା ଛ'ମାସ ହେଇଗଲିବ; କିନ୍ତୁ ଆପଣ ଯେ ଜଣେ ଶିଳ୍ପୀ ଏକଥା ଲୁଚାଇ ରଖିଚନ୍ତି କାହିଁକି ?

ତୁଷାର—ତମେ କ'ଣ ଜାଣନା ଲିସା, ତମ ବାପା ଶିଳ୍ପୀମାନଙ୍କୁ ଘୃଣାମତ ଘୃଣା କରନ୍ତି ।

ଲିସା—ଜାଣେ ।

ତୁଷାର—ସବୁ ଜାଣିଲ ପରେ ବି ତମେ ଯଦି ମୋତେ ସେଠି ଶିଳ୍ପୀ ବୋଲି ପରିଚୟ ଦିଅ, ତେବେ ଜାଣିବ ତୁମ daddyଙ୍କର guest houseରୁ ମୋତେ ଶୀଘ୍ର ବିଦାୟ କରିବାର ବାଟ କରିଦେଉଚ ।

ଲିସା—ମୋ daddy ତୁମକୁ guest houseରେ ରଖି ନ ପାରନ୍ତି । ଯା'ବୋଲି କ'ଣ ଏଠି ଅନ୍ୟ ଲୋକଙ୍କର ଅଭାବ ଅଛି !

ତୁଷାର—ନା ଲିସା । ସାରା ଦାର୍ଜିଲିଂରେ ଏତେ ଶସ୍ତା guest house ଆଉ କେଉଁଠି ନାହିଁ । ତା'ଛଡ଼ା ମୋର ଆର୍ଥିକ ଅଭାବ କଥା ତମେ ଜାଣିନାହଁ ।

ଲିସା—ମୋର କିନ୍ତୁ ଧାରଣା ଥିଲା ଆପଣ ଖୁବ୍ ଧନୀ ଘରର ପିଲା ।

ତୁଷାର—ନା, ଏକଦା ମୁଁ ବେଶ୍ ଧନୀ ଘରର ପରିବେଶରେ ଜନ୍ମ ନେଇଥିଲି । ବାପା ଥିଲେ ଜମିଦାର । ଧନଧାନ୍ୟର ଅଭାବ ନ ଥିଲା; କିନ୍ତୁ

ମୋ ବାପା ଥିଲେ ଶିଳ୍ପୀ । ତାଙ୍କର ସାଧନା ଭିତରେ ଜମିଦାରୀର ସବୁକିଛି ସୁବିଧାବାଦୀମାନେ ନେଇ ତାଙ୍କୁ ନିଃସ୍ୱ କରିଦେଲେ । ମଲାବେଳେ ସେ ତାଙ୍କର ଏଇ ଅଯୋଗ୍ୟ ଉତ୍ତରାଧିକାରୀ ହାତରେ ଦେଇଗଲେ ଗୋଟାଏ ଭାଓଲିନ ଓ ତିଣର ଏକ ମସ୍ତବୋଝ । ଖାଲି ସେତିକି ନୁହେଁ ଲିସା—ମୋର ରୋଗିଣୀ ମା'ର ଦାୟିତ୍ୱ ନେଇ ତାର ଚିକିତ୍ସାପାଇଁ ମୋତେ ଏଠିକି ଆସିବାକୁ ପଡ଼ିଲା ।

ଲିସା—ଆପଣ ତ କେବେ ଏସବୁ କଥା କାହାରିକୁ କହୁନାହାନ୍ତି ।

ତୁଷାର—କେହି କ'ଣ ଦୁଃଖ ଶୁଣିବାକୁ ଚାହେଁ ? ସମସ୍ତେ ଚାହାନ୍ତି ସୁଖ । ହଁ, ମଉଜ, ମଜଲିସ୍, ଫୂର୍ତ୍ତି । ବଡ଼ବଡ଼ ହୋଟେଲରେ ଭାଓଲିନ୍ ବଜେଇଲା ବେଳେ, ଏଠିକାର ଲୋକଙ୍କୁ ମୁଁ ଦେଖିଛି । ଦେଖିଛି ସେମାନଙ୍କର ଜୀବନ । ଗୀତ, ନାଚ, ମଦ ଭିତରେ ସେମାନେ କ୍ଷଣିକପାଇଁ ଭୁଲିଯିବାକୁ ଚାହାନ୍ତି ସବୁକିଛି ।

ଲିସା—ଆପଣ ହୋଟେଲରେ ଭାଓଲିନ୍ ବଜାନ୍ତି ?

ତୁଷାର—ହଁ ଲିସା, ମା'ଙ୍କର ଚିକିତ୍ସାପାଇଁ ଟଙ୍କା ଦରକାର । ତେଣୁ ବାଧ୍ୟହୋଇ ମୁଁ ବାଛିନେଇଛି ଏଇ ଜୀବନ ।

ଲିସା—ସେମାନେ ତୁମକୁ ନଗଦ ଟଙ୍କା ଦିଅନ୍ତି ?

ତୁଷାର—ହଁ ଦିଅନ୍ତି; କିନ୍ତୁ ଅଧିକାଂଶ ସମୟରେ ମୋର ଟଙ୍କା ବାକି ରହେ । ହୋଟେଲର ନର୍ତ୍ତକୀକୁ ଆଡ଼ଭାନ୍ସ ଦିଆହୁଏ; କିନ୍ତୁ ଘଣ୍ଟାଘଣ୍ଟା ଧରି ଭାଓଲିନ୍ ବଜାଇ ମୋ ଆଙ୍ଗୁଠି ରକ୍ତାକ୍ତ ହୋଇଗଲେ ବି ମୋ ଟଙ୍କାଟା ସବୁଦିନେ ନଗଦ ମିଳେନା ।

ଲିସା—ସେମାନେ ତୁମକୁ ଏକ୍ସପ୍ଲଏଟ କରୁଚନ୍ତି ତୁଷାର !

ତୁଷାର—ଦୁନିଆରେ ତ exploit ହେବାପାଇଁ ଜନ୍ମ ଏଇ ଶିଳ୍ପୀ ଗୋଷ୍ଠୀର । ଏମାନଙ୍କଠାରୁ ସବୁକିଛି ଆଦାୟ କଲାପରେ ବି ଦୁନିଆ ଠିକ୍ ତୁମର ବାପାଙ୍କ ଭାଷାରେ ଏମାନଙ୍କୁ କହେ ପାଗଳ ।

ଲିସା—I am sorry., ଆପଣଙ୍କୁ daddyଙ୍କ କଥା ଖୁବ୍ ଆଘାତ ଦେଇଛି ନା ?

ତୁଷାର—ନାଁ, ଲିସା, ମୋର ଅଭିମାନ ତୁମ daddyଙ୍କ ଉପରେ ନୁହେଁ । ବରଂ paying guest ହିସାବରେ ଯେ ମୋତେ ଆଶ୍ରୟ ଦେଇଥିବାରୁ ମୁଁ ତାଙ୍କଠାରେ ଋଣୀ ।

ଲିସା—Daddy ବଡ଼ practical ମଣିଷ । ସାଂସାରିକ ଜୀବନ ମିଲିଟାରୀ କ୍ୟାଣ୍ଟିନ୍‌ରେ ମ୍ୟାନେଜର୍ ଥିଲେ । ରିଟାୟାର୍ କଲାପରେ ଏଇଠି ଘର ଖଣ୍ଡିଏ କରି paying guest house ଆରମ୍ଭ କରିଛନ୍ତି । ତାଙ୍କର sentiment ବୋଲି କିଛି ନାହିଁ । ଖାଲି ଆଇନ୍ କାନୁନ୍, ଶାସନ । ତା ବି ଏତେ strict ଯେ ବେଳେବେଳେ ମୁଁ ବି ତା'ଭିତରେ ଶ୍ୱାସରୁନ୍ଧ ହୋଇପଡେ଼ ।

(ବାହାରୁ ଏଡ୍‌ୱାର୍ଡ଼ର ଗଳା ଶୁଭିଲା)

ଏଡ୍‌ୱାର୍ଡ଼—ଲିସା darling, କ'ଣ ତମେ ସେଇଠି ଥଣ୍ଡାରେ ବରଫ ପାଲଟି ଗଲ ନା କ'ଣ ?

ଲିସା—ଯାଉଛି ଏଡ୍‌ୱାର୍ଡ଼, ଯାଉଛି ।

ଏଡ୍‌ୱାର୍ଡ଼—କ'ଣ ଲିସା ? ବାଟରେ ତୁମକୁ boy friend ମିଳିଗଲା ନା କ'ଣ ?

ଲିସା—ଇସ୍ କି mean ! ମଦ ଖାଇଲେ ଏମାନଙ୍କର ସବୁ sense ଚାଲିଯାଏ । ଏଇ ଧରଣର ଲୋକଙ୍କୁ ନେଇ ବାହାରକୁ ବାହାରିବାକୁ ମୋତେ ସତରେ ଘୃଣା ହୁଏ ତୁଷାର ବାବୁ !

ତୁଷାର—ତୁମେ ଯାଅ ଲିସା ।

ଲିସା—କିନ୍ତୁ ଆପଣ ଏଇ ଥଣ୍ଡାରେ କେତେବେଳଯାଏ ଆଉ ଏଠି ରହିବେ ?

ତୁଷାର—ଆହୁରି ଦୁ'ଘଣ୍ଟା ମୋତେ practice କରିବାକୁ ପଡ଼ିବ । ତା'ପରେ ଏଠୁ ଯିବି ହୋଟେଲ । ହୋଟେଲରୁ ଫେରିଲା ବେଳକୁ ରାତି ଏଗାରଟା ।

ଲିସା—ଆପଣ ଏଇ ଅନ୍ଧାରେ ଏଠି ଏତେ ସମୟ···?

ତୁଷାର—ଆଉ ଉପାୟ କ'ଣ ? ସେଠି ତମ guest houseରେ ତ ଶିଳ୍ପୀ ବୋଲି ପରିଚୟ ଦେଇହବନାହିଁ । ତେଣୁ ଏଇଠି ବସି ଶଆଳ କରୁଚି ।

ଲିସା—ସତରେ ତୁଷାର ବାବୁ, ଆପଣଙ୍କୁ ମୋର ଦୟା ହୁଏ ।

ତୁଷାର—ଦୟା ଅଛି ବୋଲି ଜାଣିବି, ଯଦି ତୁମେ ତମ daddyଙ୍କ ପାଖରେ ମୋର ଶିଳ୍ପୀ ପରିଚୟଟା ଲୁଚେଇ ରଖିପାର ।

ଲିସା—କଥା ଦେଉଚି ତୁଷାର ।

ତୁଷାର—promise.

ଲିସା—promise.

( ତୁଷାର ଓ ଲିସା ପରସ୍ପର ହାତ ମିଳାଇଲେ । ଲିସା ଚାଲିଗଲା ଆସିଥିବା ବାଟକୁ । ନେପଥ୍ୟ car start ଏବଂ ଚାଲିଯିବାର sound effect )



## ଦ୍ୱିତୀୟ ଦୃଶ୍ୟ

[ ମିଷ୍ଟର ଯାଚକଙ୍କ guest houseର ବାରଣ୍ଡା ।
ସମୟ ସକାଳ ସାତଟା । ମିଷ୍ଟର ଯାଚକ ଖୁବ
ଜୋର୍‌ରେ ଚିତ୍କାର କରୁଚନ୍ତି । ]

ଯାଚକ—No, impossible, ଏମାନଙ୍କୁ ନେଇ ଚଳିହେବନି । ଯେତେ କହିଲେ ବି କେହି ଶୁଣିବାକୁ ନାହିଁ । ଯୋସେଫ୍, ଯୋସେଫ୍ ।

ଯୋସେଫ୍—(ଆସିଚ) good morning sir.

ଯାଚକ—କ'ଣ ହେଇଚ ଏଠି ? ଏଇଟା ଘର ନା station platform ? କ'ଣ ହେଇଚ ଏଇସବୁ ?

ଯୋସେଫ୍—କାହିଁ, କେଉଁଠି ? କ'ଣ ହେଇଚ ?

ଯାଚକ—ତୁ କିଛି ଦେଖିପାରୁନୁ ? କାହିଁକି ଦେଖିବୁ ? You are a servant, ଚୋର କାମ ହେଲା ମାସକୁ ମାସ ଦରମା ନେବା । କୋଉଠି କ'ଣ ହେଲା ତୁ କାହିଁକି ଖବର ନବୁ ? ଏଠି କ'ଣ ହେଇଚ ?

ଯୋସେଫ୍—(ଚାରିଆଡ଼କୁ ଚାହିଁ) Nothing sir.

ଯାଚକ—(ତଳୁ ଖଣ୍ଡେ ଅଧପୋଡ଼ା ସିଗାରେଟ୍ ଉଠାଇ) ଏ କ'ଣ ? ଏଇଟା କମିତି ଆସିଲା ଏଠିକି ? ଘରେ କ'ଣ ଆସ୍‌ଟ୍ରେ ନାହିଁ ?

ଯୋସେଫ୍—(ସିଗାରେଟ ଖଣ୍ଡିକ ନେଇ) Sorry sir, very sorry.

ଯାଚକ—Tell me who is that scoundrel ! ଯିଏ ଏଇଟା ଏଠି ପକେଇଚ ?

ଯୋସେଫ୍—I know not sir.

ଯାଚକ—ବାହାରୁ କେହି ଆସି ଏଇଟା ପକେଇ ନାହିଁ । ଯୋଉମାନେ ଏଠି ରହୁଚନ୍ତି ସେଇମାନଙ୍କ ଭିତରୁ କେହି ନିଶ୍ଚୟ ଏଇଟା ପକେଇଚି ।

ଯୋସେଫ୍—Yes sir, ସେଇଆ ହେଇଥିବ ।

ଯାଚକ—(ଚିନ୍ତାକରି) ହେଇଥିବ କ'ଣ ? ହେଇଚି । କିଏ କରିଥିବ ? ହୁଁ, ରାଜୀବ ହେଇଥିବ । ତା'ର discipline ବୋଲି କିଛି ନାହିଁ । I can't allow this to continue. ରାଜୀବ ବାବୁଙ୍କୁ ଏଠିକି ଡାକ । ଆଉ ଶୁଣ, ଏଡ୍‌ଓ୍ୱାର୍ଡ୍‌କୁ bed tea ଦେଇଛୁ ।

ଯୋସେଫ୍—No sir sorry, very sorry

ଯାଚକ—Nonsence, ଜାଣିଛୁ ସେ କିଏ, He is my would be son-in-law. ସେ ହେବ ଦିନେ ଏ ଘରର ମାଲିକ, ତୁ ତାକୁ neglect କରୁଛୁ । ଏବେଠୁ ଜାଣିରଖ, ଯା' ତାକୁ bed tea ଦେଇଆ ଆଉ ରାଜୀବ ବାବୁଙ୍କୁ ଏଠାକୁ ଡାକିଦେ ।

ଯୋସେଫ୍—Yes sir, going immediately.

(ଯୋସେଫ୍ ଚାଲିଗଲା)

ଯାଚକ—(ବିବ୍ରତ ହୋଇ) ପ୍ରତିଦିନ ସକାଳୁ ଉଠିଲାବେଳକୁ କିଛି ନା କିଛି ଗୋଳମାଳ ହେଇଥିବ । ଏମିତି ପାଟି କରିକରି ମୋର blood pressure ବଢ଼ିଗଲାଣି । ଯେତେସବୁ useless ଆସି ଏଠି ଜୁଟିଛନ୍ତି ।

( ଆସିଛି ସରୋଜ, ମୁହଁଟି ତାର ସବୁବେଳେ ହସହସ, ବେଶଭୂଷାରେ ଆଧୁନିକ । )

ସରୋଜ—Good morning uncle.

ଯାଚକ—Morning, morning ସରୋଜ !

ସରୋଜ—ରାଜୀବକୁ ଡକାଇଥିଲେ ?

ଯାଚକ—ହଁ ।

ସମ୍ବେଦକ—କିନ୍ତୁ ସେ ତ ଆସିପାରିବ ନାହିଁ ।

ଯାଚକ—କାହିଁକି ?

ସମ୍ବେଦକ—ସେ'ତ ଶୋଇଛି ।

ଯାଚକ—It is already 8 A. M. ସେ କ'ଣ ଅସୁସ୍ଥ ।

ସମ୍ବେଦକ—ନା ! ସେମିତି କିଛି ତ ହୋଇନି ।

ଯାଚକ—ତା'ହେଲେ ଶୋଇଛି କାହିଁକି ?

ସମ୍ବେଦକ—ସେ ତ ପ୍ରତିଦିନ ସକାଳ ଆଠଟାରେ ଶୁଏ uncle.

ଯାଚକ—ତାହେଲେ ଉଠେ କେତେବେଳେ ?

ସମ୍ବେଦକ—ଯେତେବେଳେ ନିଦ ଭାଙ୍ଗେ ।

ଯାଚକ—ଆଶ୍ଚର୍ଯ୍ୟ !

ସମ୍ବେଦକ—ମୋଟେ ଆଶ୍ଚର୍ଯ୍ୟ ନୁହେଁ । ରାତିସାରା ତାକୁ ଲେଖିବାକୁ ପଡ଼େ, ସକାଳୁ ଶୋଇବନି ତ କ'ଣ କରିବ ?

ଯାଚକ—କ'ଣ ସେ ଲେଖେ ?

ସମ୍ବେଦକ—ନିଜେ ଲେଖେନି uncle, ସେ ଅନୁବାଦ କରେ ।

ଯାଚକ—ତା ମାନେ ରାଜୀବ ଗୋଟେ ଲେଖକ ! ସର୍ବନାଶ !!!

ସମ୍ବେଦକ—ଆପଣ ଏମିତି ବ୍ୟସ୍ତ ହେଉଛନ୍ତି କାହିଁକି uncle.

ଯାଚକ—ସେ ଏଇଠି ରହିପାରିବ ନାହିଁ; No, never.

ସମ୍ବେଦକ—କଥାଟା କ'ଣ ବୁଝିପାରିଲି ନାହିଁ uncle, ସେ ତ ଏମିତି କିଛି ଖରାପ ଲୋକ ନୁହେଁ, ବହୁତ ବଡ଼ବଡ଼ publisherମାନେ ତାକୁ କାମ ଦେଉଛନ୍ତି ।

ଯାଚକ—ଲେଖକମାନଙ୍କୁ ତୁମେ ଜାଣିନାହଁ, ସମ୍ବେଦ ! ସେଇମାନଙ୍କ ଲେଖା ମଣିଷ ଜାତିକୁ ଖରାପ କରିଛି । ମଣିଷ ଖାଇପିଇ ବେଶ୍ ଖୁସିରେ

ଥାଆନ୍ତା; କିନ୍ତୁ ଏହି ଲେଖକ, ନାଟ୍ୟକାର, କବିମାନେ ସବୁ spoil କଲେ । ମଣିଷର ମନମଧ୍ୟରେ ଦେଲେ ସୂକ୍ଷ୍ମ ଚେତନାର ବିପ୍ଳବ ।

ସରୋଜ—ବୁଝିଲି uncle, ଆପଣ ଲେଖକ, କବି, ଶିଳ୍ପୀମାନଙ୍କୁ ମୋଟେ ସହ୍ୟକରନ୍ତିନି; କିନ୍ତୁ ରାଜୀବ ତ ଜୀବନସାରା ଚେଷ୍ଟାକରି ମଧ ଲେଖକ ହୋଇପାରିଲା ନାହିଁ; ସେ ଖାଲି ଅନୁବାଦକ ହୋଇ ରହିଗଲା ।

ଯାଚକ—Stop it, ତୁମେ ଭିତରକୁ ଯାଅ । ମୁଁ ଆଜି ତାକୁ ଗୋଟେ written notice ଦେଉଛି । He must vacant as soon as possible.

[ ସରୋଜ ଯିବାକୁ ଉଠିଲା; ହାତରେ କପ୍ ଧରି ପ୍ରବେଶ କରିଛନ୍ତି ଏଡ୍‌ଓ୍ୱାର୍ଡ୍, ଦେହରେ night gown, ମୁହଁରେ ଆଭିଜାତ୍ୟର ହସ । ]

ଏଡ୍‌ଓ୍ୱାର୍ଡ୍—Good morning daddy, good morning.

ଯାଚକ—Good morning my son, ଆଚ୍ଛା କାଲି ରାତିରେ କେମିତି ନିଦ ହେଲା ।

ଏଡ୍‌ଓ୍ୱାର୍ଡ୍—Verry sorry daddy, କାଲି ରାତିରେ ମୁଁ ଆଦୌ ଶୋଇପାରିଲି ନାହିଁ ।

ଯାଚକ—କାହିଁକି କ'ଣ ହେଲା, ତମକୁ କିଏ disturb କଲା ?

[ଏଠିକିବେଳେ ସରୋଜର ପୁନର୍ପ୍ରବେଶ]

ଏଡ୍‌ଓ୍ୱାର୍ଡ୍—ରାତିରେ ଏ ନିକଟରେ କିଏ ଗୋଟେ flute ବଜାଉଥିଲା । ତାକୁ ଶୁଣି ମୁଁ ଶୋଇପାରିଲି ନାହିଁ ।

ସରୋଜ—ସେ କିନ୍ତୁ ଚମତ୍କାର ବଜାଉଥିଲା Mr ଏଡ୍‌ଓ୍ୱାର୍ଡ୍, ଖୁବ୍ ଚମତ୍କାର ଆଃ···ଆଃ ମୁଁ ତ ଆରାମରେ ଶୋଇଗଲି !

ଯାଚକ—(ରାଗିଯାଇ) Oh ! please stop, ସରୋଜ !

ସରୋଜ—ଟ୍ୟାପ୍‌ରେ ପାଣି ଆସୁନାହିଁ uncle.

ଯାଚକ—ଓଃ ! ଟ୍ୟାପ୍‌ରେ ନ ଥିଲେ ଡ୍ରମ୍‌ରେ ଥିବ, ଡ୍ରମ୍‌ରେ ନ ଥିଲେ ରିଜରଭଏରରେ ଥିବ; ଯାଅ ଦେଖ ।

ସତ୍ୟେନ—ହଁ, କେଉଁଠି ନ ଥିଲେ ଝରଣାରେ ତ ଥିବ !

ଯାଚକ—(ଚିତ୍କାର କରି) Will you please stop ।

ସତ୍ୟେନ—ଯାଉଛି uncle । (ସତ୍ୟେନ ଚାଲିଗଲା)

ଯାଚକ—ହଁ, କ'ଣ କହୁଥିଲ ସେ flute କଥା ?

ଏଡ୍‌ୱାର୍ଡ—Flute ପ୍ରତି ମୋର ଗୋଟିଏ ଆଲର୍ଜି ଅଛି daddy.

ଯାଚକ—Exactly, flute ଶୁଣିଲେ ମୋତେ ବିରକ୍ତ ଲାଗେ ।

ଏଡ୍‌ୱାର୍ଡ—ଆପଣ ଜାଣନ୍ତି ମୋର first wifeକୁ ମୁଁ ଏଥିପାଇଁ divorce କଲି, ସେ ଦିନସାରା flute ବଜାଉଥିଲା ।

ଯାଚକ—ଲିସା ସେସବୁର ଧାର ଧାରେନା, she hates music—ସେ ସଙ୍ଗୀତକୁ ଘୃଣା କରେ ।

ଏଡ୍‌ୱାର୍ଡ—ସେଇଥିପାଇଁ ତ ମୁଁ ତାକୁ ପସନ୍ଦ କରିଛି ।

ଯାଚକ—I appreciate your choice my boy. I hope you will happy with her.

ଏଡ୍‌ୱାର୍ଡ—With your blessings daddy.

ଯାଚକ—କାଲି ଘରର ଅସୁବିଧା ଆଜି ଆଉ ହେବ ନାହିଁ । ମୁଁ ତାର ବ୍ୟବସ୍ଥା କରୁଛି ।

ଏଡ୍‌ୱାର୍ଡ—Many thanks daddy.

ଯାଚକ—ହଁ, ତୁମେ breakfast କରିନଅ, ଲିସା ତମପାଇଁ ଅପେକ୍ଷା କରିଥିବ । (ଏଡ୍‌ୱାର୍ଡ ଚାଲିଗଲେ)

[ ଯାଚକ ମନେମନେ ଗୁଣୁଗୁଣୁ ହୋଇ କହୁଛନ୍ତି—tapରେ ପାଣି ନାହିଁ ବୋଲି ସବ୍ୱେଜ ଚଳ୍ଲାର କରୁଛୁ—Flute ଶବ୍ଦରେ ଏଡ୍ଓାର୍ଡ୍ ଶୋଇପାରୁ ନହିଁ—ମୋ ମୁଣ୍ଡଟା ଖରାପ ହୋଇଯିବ ଦେଖୁଛୁ । ଯୋସେଫ, ଯୋସେଫ ' ] (Willium ପ୍ରବେଶ କରୁଛୁ)

ୱିଲିୟମ୍—ଯୋସେଫ ନାହିଁ ।

ଯାଚକ—କୁଆଡ଼େ ଯାଇଛୁ ?

ୱିଲିୟମ୍—ବାହାରକୁ ।

ଯାଚକ—କାହିଁକ ?

ୱିଲିୟମ୍—ସିଗାରେଟ୍‌ପାଇଁ, ମୁଁ ତାକୁ ପଠାଇଛୁ ।

ଯାଚକ—ସେ ଖାଲି ଦ୍ୱନବ୍ରାଦ ଚୋଣ କାମ କରୁଥାଉ ।

ୱିଲିୟମ୍—I can't help it. ମୋ ଛାତିରେ ବଡ଼ pain.

ଯାଚକ—ଔଷଧ ଖାଇବୁ ଯାଆ ।

ୱିଲିୟମ୍—କାହିଁକ ତମ ପାଖରୁ ଟଙ୍କା ସରିଗଲଣି ନା କ'ଣ ?

ଯାଚକ—ତୁମେ ଭଲ ଭାବରେ ଜାଣ ମୋର chest painର ଔଷଧ କ'ଣ । ଟଙ୍କା କାଢ଼ । ଡେରହେଉଛୁ ।

ଯାଚକ—(ବିରକ୍ତ ହୋଇ) I have no money.

ୱିଲିୟମ୍—ମଦ ନ ଖାଇଲେ ମୁଁ ପାଗଳ ହୋଇଯିବ ।

ଯାଚକ—ପାଗଳ ହୋଇଯାଆ । Guest houseର କୌଣସି ଖବର ତୁ ବୁଝୁ ନାହୁଁ । Tapରେ ପାଣି ନାହିଁ, ରୁମ୍‌ଗୁଡ଼ା ସଫା ହେଉନାହିଁ, ଏଡ୍‌ଓାର୍ଡ଼ ବାଦରେ ଶୋଇପାରୁ ନାହିଁ, ସବୁ ଜଞ୍ଜାଳ ମୁଁ ବୁଝୁଥିବ; ଆଉ ସକାଳୁ ତୁ ମାଗିବୁ ଟଙ୍କା ।

ୱିଲିୟମ୍—କାଇଁ ମୋତେ ତ ଏସବୁ ଅସୁବିଧା କଥା କେବେ କହୁନାହଁ ?

ଯାଚକ—ଏବେ ତ ଜାଣିଲ୍ । ଏଣିକି ଦେଖ୍ ଏସବୁ problem ମୋତେ ଯେମିତି
ଦେଖିବାକୁ ନ ହୁଏ ।

ହରିଲସ୍ତମ୍—ଠିକ୍ ଅଛି, ମୁଁ ସବୁ ବ୍ୟବସ୍ଥା କରୁଛି; କିନ୍ତୁ ଟଙ୍କା ଦିଅ ।

[ଏହି ସମୟରେ ଲିସା ଆସିଛି]

ଲିସା—ପ୍ରତିଦିନ ସବାକୁ uncleଙ୍କ ଟଙ୍କାପାଇଁ କାହିଁକି ହଇରାଣ କରୁଛ, daddy ଦେଇଦିଅନା !

ଯାଚକ—ତୁ ଏଡ୍‌ଓ୍ବାର୍ଡ଼କୁ breakfastରେ ଛାଡ଼ିଦେଇ ଆସିଲୁ ଲିସା !

ଲିସା—ଆସନ୍ତୁନ । ତୁମେ ଯେମିତି ଚକ୍ରାନ୍ତ କରୁଛନ୍ତି ଛି ! ଛି !

ଯାଚକ—ଠିକ୍ ଅଛି, ବାଧ୍ୟହୋଇ ମୁଁ ଯାଉଛି ଏଡ୍‌ଓ୍ବାର୍ଡ଼କୁ company ଦେବ । ସେ ସେଠି ଏକା ବସିଥିବ ।

[ ହରିଲସ୍ତମ୍‌ଙ୍କୁ ଦୁଇଟି ଦଶଟଙ୍କିଆ ନୋଟ୍ ଫୋପାଡ଼ିଦେଇ ଯାଚକ ଚାଲିଗଲେ । ]

ହରିଲସ୍ତମ୍—I am sorry to disturb you ଲିସା dear.

ଲିସା—ତୁମର କିଛି ଦୋଷ ନାହିଁ, ସବୁ daddyଙ୍କର; କିନ୍ତୁ ତୁମେ କାହିଁକି ଏତେ ମଦ ପିଉଛ uncle.

ହରିଲସ୍ତମ୍—ତୁ ଜାଣିନୁ ଲିସା ମୁଁ କାହିଁକି drink କରେ । ଆଜି ସେକଥା ମୁଁ ତୋତେ କହିପାରିବି ନାହିଁ । କହିବି ଦିନେ, କହିବି ନିଶ୍ଚୟ, କହିବି ।

ଲିସା—Uncle !

ହରିଲସ୍ତମ୍—ସମସ୍ତେ ମୋତେ ଭୁଲ୍ ବୁଝନ୍ତୁ ମା' But my daughter you don't misunderstand me.

[ଲିସାର ମୁଣ୍ଡକୁ ଆଉଁସି ଦେଲେ]



## ତୃତୀୟ ଦୃଶ୍ୟ

[ Guest houseର ଝରକା ଦେଇ ଦେଖାଯାଉଛି ଦୂରରେ କାଞ୍ଚନଜଙ୍ଘାର ଶୃଙ୍ଗ । ଟେବୁଲ ପାଖରେ ବସିଛନ୍ତି ରାଜୀବ, ତୁଷାର ଓ ସରୋଜ । ସମସ୍ତେ ଖାଇସାରିଛନ୍ତି କେବଳ ସରୋଜଙ୍କୁ ଛାଡ଼ି । ]

ସରୋଜ—ବାଳେ, କହ୍ୱାଡ ବାଳେ । ଏଗୁଡ଼ା କ'ଣ ମଣିଷ ଖାଆନ୍ତି ?

ତୁଷାର—କ'ଣ ହୋଇଚି ?

ସରୋଜ—ଏଗୁଡ଼ା, ତମେମାନେ ଖାଇପାରୁଚ ?

ତୁଷାର—ମୋର ତ ସରିଲାଣି । (ରାଜୀବ ପ୍ରତି)
କ'ଣ ! ରାଜୀବ ତୋର ସରିଲା ।

ରାଜୀବ—ମୁଁ ତ କିଛି ଜାଣିପାରୁ ନାହିଁ ।

ସରୋଜ—ନାଁ, ଜାଣିବୁ କାହିଁକି, ତମ ଦୁଇଟାଙ୍କୁ ତ ଘାସ ଦେଲେ ଖାଇଦେବ ।

ରାଜୀବ—କାହିଁକି, କ'ଣ ହେଲା ?

ସରୋଜ—ଏହି ପାଉଁରୁଟି ଖାଇଲେ ଗ୍ୟାଷ୍ଟ୍ରିକ୍ ଅଲସର୍ ହୋଇଯିବ । ମୁଣ୍ଡରୁ ବାଳ ଉପୁଡ଼ିଯିବ । ବୁଝିଲୁ ? ଯୋସେଫ୍, ଯୋସେଫ୍ !

ଯୋସେଫ୍—Yes sir, going sir !

ସରୋଜ—ଏଗୁଡ଼ା କ'ଣ ?

ଯୋସେଫ୍—Bread sir, ବ୍ରେଡ୍ ।

ସରୋଜ—Bread, ସେକଥା ମୁଁ କ'ଣ ଜାଣିପାରୁ ନାହିଁ । ନେ, ଖା, ଖାଇକରି ଦେଖ୍ । କେଉଁଠୁ ଏଗୁଡ଼ା ଆଣିଛୁ ?

ଯୋସେଫ୍—Health Storeରୁ sir !

ସର୍ବେଶ—Health Storeରୁ ନା ଷ୍ଟେସନ୍ platformରୁ, ଆଉ ଯେମିତି ଏ ବାଜେ ଜିନଷ ନ ଆସେ ।

ଯୋସେଫ୍—Bad sir !

ସର୍ବେଶ—(ଯୋସେଫ୍ ର କାନଧରି) Bad ନୁହେଁ, rotten.

ରଜୀବ—ତାକୁ କହି ଲଭ କ'ଣ ? ବୁଢ଼ାକୁ କହିଲେ ସିନା ହେବ ।

ସର୍ବେଶ—ହଁ, ସବୁ ଦୋଷ ସେଇ ବୁଢ଼ାର । ପଇସା ତ କମ୍ ଦେବ ବଜାରରୁ ବାଜେ ଜିନଷ ଆସିବନି ଆଉ କ'ଣ ଭଲ ଜିନଷ ଆସିବ । ଶଳା କଞ୍ଜୁସ୍ !

ତୁଷାର—କାହିଁକି ପାଟିଟା କରୁଛୁ !

ସର୍ବେଶ—କରେ ମୁଁ କ'ଣ ଏକା ଖାଉଛି, ତୁମେମାନେ ତ ଖାଉଛ । ମୁଁ ଏକା ଚିଲ୍ଲାପଡ଼ିବ କାହିଁକି ? ଚାଲ ସମସ୍ତେ ମିଶି complain କରିବା !

ତୁଷାର—ଯିବି ଯେ, ମୋର ଅସୁବିଧା କଥା ତ ତମେମାନେ ଜାଣିଛ । ଏହାଠୁ କମ୍ ଖର୍ଚ୍ଚରେ ଦାର୍ଜିଲିଂ ଭଳିଆ ଜାଗାରେ କେଉଁଠି ରହିହେବ ? ତମେମାନେ ତ ବଡ଼ଲୋକ, ମନକଲେ ବଡ଼ବଡ଼ ହୋଟେଲରେ ରହିପାରିବ ।

ଯୋସେଫ୍—(ପ୍ରବେଶ କରି) ଆପଣଙ୍କ ଫୋନ୍ ସାର୍ ! ତୁଷାର ଓ ଯୋସେଫ୍ ଭିତରକୁ ଚାଲିଗଲେ ।

ସର୍ବେଶ—ତୁଷାରଟା କ'ଣ କହୁଛି ଶୁଣୁଛୁ, ନଗଦ ଟଙ୍କା ଗଣି ଗୋରୁଗାଈ ଭଳି ଖାଇ କିଏ ଏଠି ରହିବ, କ'ଣ କହୁଛୁ ରଜୀବ ?

ରଜୀବ—ତମେମାନେ ସିନା ଟଙ୍କା ଗଣିଦେଉଛ, ମୋର ତ ସବୁବେଳେ ବାକି । ଜାଣିଛୁ ତ···ଆଉ କ'ଣ କହିବ ।

ସର୍ବେଶ—ଆରେ, ଆଜି ନ ଦେଲେ ପନ୍ଦରଦିନ ପରେ ତ ଦେଉଛୁ । କୋଉ ଏବେ ବୁଢ଼ା ଛାଡ଼ିଦେଉଛି । ଦୁନିଆ ଏପଟ ସେପଟ ହୋଇଯିବ ହେଲେ ତା'ର ଗୋଟାଏ ପଇସା ଭୁଲ ହେବନି । ଏ ଘରେ ଯେଉଁ ନିୟମକାନୁନ୍, ମାନେ

ଠିକ୍ ସକାଳ ୮ଟାରେ breakfast. 1 P. M.ରେ lunch, ପୁଣି 8 P. M.ରେ dinner, 9 P. M ରେ light off । ଖାଲି ବାହାର ଗାର୍ଡ଼କୁ ଛାଡ଼ିଦେଲେ ଗୋଟେ Military camp. I am fade up !!! ତୁମେମାନେ ବୁଝ କି ନ ବୁଝ ମୁଁ ଆଜି ନିଶ୍ଚୟ complain କରିବ । [ଉଇଲସ୍ନମ ଓ ହରଦୀପର ପ୍ରବେଶ]

ଉଇଲସ୍ନମ୍—ଏଇଟା paying guest house ନୁହେଁ, Home—sweet home । ଏମିତ atmosphere Darjeelingର ଅନ୍ୟ କେଉଁ ଜାଗାରେ ପାଇବେ ନାହିଁ ।

ହରଦୀପ—ଆଚ୍ଛା !

ଉଇଲସ୍ନମ୍—ଏଇମାନେ ସମସ୍ତେ ଏଠି ଅଛନ୍ତି ।

[ସଙ୍ଗ୍ରେଜ ଓ ସ୍ୱଜୀବଙ୍କୁ ଦେଖାଇ]

ଏମାନଙ୍କୁ ପଚ୍ଚରି ପାରନ୍ତି । You ask them. ଏମାନେ ସମସ୍ତେ ସ୍ୱୀକାର କରିବେ ଖାଇବା ସେମିତ, ରହିବା ସେମିତ । ତା'ଛଡ଼ା, light, phone, 24 hours tap water, ଏସବୁ extent condition ଆଉ ସବୁଠୁ ବଡ଼କଥା ହେଲା your privacy.

ସଙ୍ଗ୍ରେଜ—Uncle ଠିକ୍ କହୁଛନ୍ତି । ଖାଲି privacy ନୁହେଁ, ଆଶଙ୍କ୍ରୋଟେକସି ମଧ୍ୟ ।

ଉଇଲସ୍ନମ—(ଝରକାର ପରଦା ଆଡ଼େଇ ଦେଇ) ଦେଖନ୍ତୁ, World famous କଞ୍ଚନଜଙ୍ଘା ଆଉ ଦୂରରେ ଏଭରେଷ୍ଟ ଟାଇଗର ହିଲ୍ ତ ଏଇ ପାଖରେ, ଆଉ ଅସୁବିଧା କ'ଣ ? ମୁଁ ଆପଣଙ୍କ ରୁମ୍ ରେଡ଼ି କରିଦେଉଛି । ବ୍ରେକ୍‌ଫାଷ୍ଟ ଖାଇନଥିବେ ତ ? ଆରେ ତମେମାନେ ସବୁ ବ୍ରେକ୍‌ଫାଷ୍ଟ କରିସାରିଲଣି ବୋଧହୁଏ ?

ସଙ୍ଗ୍ରେଜ—Uncle, ଆଜି ବ୍ରେକ୍‌ଫାଷ୍ଟ ଏତେ ଚମତ୍କାର ହୋଇଥିଲା ମନେହେଉଥିଲା ସତେ ଯେପରି ଏକ special preparation.

ଉଇଲ୍‌ସନ୍—ନିଶ୍ଚୟ ହେଇଥିବ। You all boys get interduce yourself. ଯୋସେଫ୍ ! ଯୋସେଫ୍ ! ଗାଡ଼ିରୁ beding ଓ ସୁଟ୍‌କେଶଟା ନେଇଆସିଲୁ। [ଡାକ ଡାକ ଭିତରକୁ ଚାଲିଗଲେ]

ଯୋସେଫ୍—Yes sir, ଯାଉଛି sir.

ରାଜୀବ—ବସନ୍ତୁ, ଠିଆହୋଇ ରହିଲେ ଯେ, ଆପଣଙ୍କପାଇଁ breakfast ଆସୁଛି।

ହରଦୀପ—Breakfast ଏଇଠି ହବ, ଆଗେ ମୁଁ ଆପଣମାନଙ୍କ ସାଙ୍ଗରେ ପରିଚିତ ହୋଇସାରେ। ମୋ ନା ହରଦୀପ୍।

ସରୋଜ—ଦାସ, ପଟ୍ଟନାୟକ, ମହାପାତ୍ର କମ୍ବା ରାଉତରାୟ ହୋଇଥିବେ।

ହରଦୀପ—ନା, ମୋର କିଛି ସରନେମ୍ ନାହିଁ। ମୋର ନାଁ ପଛରେ କିଛି surname ରଖିବାକୁ ମୁଁ ପସନ୍ଦ କରେନାହିଁ। କାରଣ ଏଇ ସରନେମ୍ ନେଇ ଦୁନିଆରେ ଯେତେ ସବୁ ଗଣ୍ଡଗୋଳ।

ରାଜୀବ—You are right, I appreciate your idea.

ସରୋଜ—ଆପଣ ଏଠି କେମିତି ?

ହରଦୀପ—ବାପାଙ୍କ ଅର୍ଡ଼ରରେ ଘରୁ ବାହାରିଆସିଲି। ପ୍ରିନ୍‌ସିପାଲଙ୍କ ଅର୍ଡ଼ରରେ ହଷ୍ଟେଲ ଛାଡ଼ିଲି, ଆଉ ଏଇ ଉଇଲ୍‌ସନ୍‌ଙ୍କ ନିର୍ଦ୍ଦେଶରେ ଷ୍ଟେସନରୁ ଏଠିକି ଆସିଲି।

ରାଜୀବ—ଏଠି ସମସ୍ତେ ତାଙ୍କୁ uncle ବୋଲି ଡାକନ୍ତି।

ହରଦୀପ—ବେଶ୍, ମୁଁ ବି ସେମିତି ଡାକିବି। [ଯୋସେଫ୍ ଆସିଛି]

ଯୋସେଫ୍—Your bed-room ready sir, tip-top sir, breakfast କରି, ଆପଣ ସେଠିକି ଚାଲିଯିବେ ସାର୍। [ଯୋସେଫ୍ ଚାଲିଗଲା]

ରାଜୀବ—ଚାଲନ୍ତୁ ହରଦୀପ ବାବୁ, breakfast ଶେଷକରି ଆପଣଙ୍କ ରୁମ୍‌କୁ। ସେଇଠି ବସି discussion କରିବା।

ସଗ୍ରେଜ—ଆଜ୍ଞା, ମି. ହରଦାପଙ୍କର arrivalଟା ସେଇଠି ସେଲିବ୍ରେଟ୍ କରିଯାଉ ।
[ସମସ୍ତେ ଚାଲିଗଲେ]

ଯାଚକ—Scoundrel, ଯେତେସବୁ ରାସ୍କେଲ ଏଠି ଜୁଟିଛନ୍ତି and I have to manage them. ସବୁକଥା ବୁଝିବି ମୁଁ, ଏପର୍ଯ୍ୟନ୍ତ ଏଠି breakfast plateଗୁଡ଼ା ପଡ଼ିରହିଚ । ଏତେଗୁଡ଼ାଏ bread ଏଠି କିଏ ଛାଡ଼ିଚ, They have no right to spoil food. ଯୋସେଫ୍, ଯୋସେଫ୍ ।

ଯୋସେଫ୍—Yes sir, coming ସାର୍ ।

ଉଇଲସ୍ନମ୍—(ପ୍ରବେଶ କରି) ସଜ୍ଜାନ୍ତି ଆଜି ମିଜାଜ୍‌ଟା ଗରମ କାହିଁକି ?

ଯାଚକ—ହବନ ? ଭୁତ ବୁଝୁନୁ । ଏଠିକାର ଡିସିପ୍ଲିନ୍ ଆଉ ଅର୍ଡ଼ର ନେଇ ମୋତେ ସବୁବେଳେ ପାଟି କରିବାକୁ ପଡ଼ୁଚ ।

ଉଇଲସ୍ନମ୍—ଯାହାହେଲେ ବି ଆଜି ମୁଣ୍ଡଟା ଟିକିଏ ଥଣ୍ଡା ରହିବା କଥା ।

ଯାଚକ—କାହିଁକି ?

ଉଇଲସ୍ନମ୍—ପକେଟ୍‌ଟା ଗରମ ଥିବ । ହରଦାପଠାରୁ ଆଡ଼ଭାନ୍‌ସଟା ନିଶ୍ଚୟ ମିଳିଥିବ ।

ଯାଚକ—ହଁ, ମିଳିଛି ।

ଉଇଲସ୍ନମ୍—କେତେ ଶହ ? ସତ କୁହ ।

ଯାଚକ—ତିନ ଶହ ।

ଉଇଲସ୍ନମ୍—ସତ ନ କହି ତମର ଉପାୟ ନାହିଁ । ହରଦାପ ସଙ୍ଗରେ ମୁଁ କଥାବାର୍ତ୍ତା final କରିଥିଲି, ବାହାରକର ମୋର କୋଡ଼ିଏ ଟଙ୍କା ।

ଯାଚକ—କୋଡ଼ିଏ ?

ଉଇଲସ୍ନମ୍—ବେଶି କିଛି ନୁହେଁ । ଶତକଡ଼ା ପାଞ୍ଚ ଟଙ୍କା ହିସାବରେ ମୋର କମିଶନ ପନ୍ଦର ଟଙ୍କା, ଆଉ ମୋର daily allowance ପାଞ୍ଚ ଟଙ୍କା । ସବୁ ମିଶି କୋଡ଼ିଏ ହେଲା ।

ଯାଚକ—ଚେକ୍‌ଟା ଭଙ୍ଗେଇଲେ ଦେବ୍‌।

ଉଇଲସ୍ନମ୍—ଓଃ, ହଲେଧାପ ଚେକ୍ ଦେଇଛୁ । ବେଶ୍ ବୁଝିପାରୁଥିବ, ପିଲଟା କୋଉ statusର । ଦାର୍ଜିଲିଂର ଯେକୌଣସି ବଡ଼ ହୋଟେଲରେ ସିଏ ରହିପାରିଥାଆନ୍ତା; କିନ୍ତୁ ତାକୁ ଏଠିକି ଟାଣିଆଣିଛୁ ମୁଁ ।

ଯାଚକ—କିନ୍ତୁ ଟଙ୍କାଟା ଏବେ ତୋର କ'ଣ ନିହାତି ଦରକାର ?

ଉଇଲସ୍ନମ୍—Yes, right now.

ଯାଚକ—କିନ୍ତୁ ଏଇଟା ଯେ ଚେକ୍ ।

ଉଇଲସ୍ନମ୍—(ଯାଚକଙ୍କ ହାତରୁ checkଟା ନେଇ) ଚେକ୍‌ଟା encash କଲାପରେ ବାକି ଟଙ୍କାଟା ଫେରାଇ ଦେବ ।

ଯାଚକ—କିନ୍ତୁ !!!

ଉଇଲସ୍ନମ୍—ଇଚ୍ଛାକଲେ ମୁଁ ସବୁ ନେଇଯାଇପାରେ କିନ୍ତୁ ସେଇଟା ମୋର principle ନୁହେଁ, ଉଇଲସ୍ନମ୍ ତା'ର ନାଯ୍ୟ ପ୍ରାପ୍ୟଠାରୁ ଅଧିକା ପଇସାଟିଏ ବି କାହାଠାରୁ ନିଏନି । ମୁଁ କଥା ଦେଉଚି ବାକିଟଙ୍କା ଫେରାଇଦେବ । [ଉଇଲସ୍ନମ୍ check ଖଣ୍ଡିକ ଧରି ଚାଲିଗଲେ]

ଯାଚକ—Money slave (ଯାଚକ ବିରକ୍ତିରେ ଚାଲିଗଲେ)

[ଆସିଚନ୍ତି ତୁଷାର ଓ ଲିସା]

ତୁଷାର—ମୁଁ ସବୁ ସହିପାରେ ଲିସା, କିନ୍ତୁ ସହିପାରେନା ତମର ଏଇ ପକ୍ଷପାତିତା ।

ଲିସା—ପକ୍ଷପାତିତା ?

ତୁଷାର—ହଁ, ମୋର ଖାଇବା plateରେ ତମେ motton କଟଲେଟ୍, ଫିସ୍‌ଫ୍ରାଏ ଲୁଚେଇ ଲୁଚେଇ ଦବାଟା ମୁଁ ଆଦୌ ପସନ୍ଦ କରିପାରୁନି ।

ଲିସା—ମୁଁ କ'ଣ ତା'ବଦଳରେ କିଛି ମାଗୁଛି ?

ତୁଷାର—ତମେ ନ ମାଗିଲେ ବି ମୁଁ undue favour ନବାକୁ ଯିବ କାହିଁକି ? କାହିଁକି ମୁଁ ଋଣୀ ହେବ ତମ ପାଖରେ ?

ଲିସା—ତୁଷାର !!!

ତୁଷାର—ହଁ, ଲିସା, ଯଦିନେ ତୁମେ ଦେଖିବ କେଉଁ ସଜାଡ଼ିଅର କେଉଁ ଏକ କୋଣରେ ବନାଉଥିବା ଏକ ଯୋଗୀ ପ୍ରତି ଟିକିଏ ଦୟା ଆସିଲା; କିନ୍ତୁ ସେଇଟା ଦୟାହେବା ଉଚିତ । ତା'ଠୁ ବେଶି କିଛି ହେବା ଆଦୌ ଉଚିତ ନୁହେଁ ।

ଲିସା—You are cruel, ତମେ ନିଷ୍ଠୁର, ପଥର ।

ତୁଷାର—ହଁ, ମୁଁ ନିଷ୍ଠୁର; କିନ୍ତୁ ତମେ ଏକ ମାୟାମୃଗ ଖିଆଲ ଗୁଡ଼ । There are certain things which are impossible.

ଲିସା—(sentimental ହୋଇ) ତୁଷାର···ତୁଷାର !!!

ତୁଷାର—ମୋ କଥା ଯଦି ତୁମକୁ ଆଘାତ ଦେଇଥାଏ ମୋତେ କ୍ଷମାକରିବ ଲିସା, I am sorry. [ତୁଷାର ଚାଲିଗଲା]



## ଚତୁର୍ଥ ଦୃଶ୍ୟ

[ ହୋଟେଲ ଗ୍ରୀନ୍‌ର ଲନ ଉପରେ ଧୀରେ ପଦଚାରଣା କରୁଥିଲେ ମିସେସ୍ ଖାନ୍ । ତୁଷାର ଆସିଚି । ]

ତୁଷାର—ଗୁଡ୍ ମର୍ଣ୍ଣିଙ୍ଗ ମିସେସ୍ ଖାନ୍ ।

ମିସେସ୍ ଖାନ୍—ହ୍ୟାଲୋ ତୁଷାର ! ମୁଁ ତୁମକୁ କଂଗ୍ରାଚୁଲେଟ୍ କରୁଚି । କୌଣସି ଟୁରିଷ୍ଟ seasonରେ ହୋଟେଲରେ ଏତେ ବେଶି sale ହୋଇ ନ ଥିଲ, ମୁଁ frankly ଆଜି admit କରୁଚି, ଏଇ ସୁନାମ, ଏଇ ଗୌରବ ଆଜି କେବଳ ତମରିପାଇଁ । ତମର magic violin ପାଇଁ ।

ତୁଷାର—ତମର compliment ପାଇଁ ଧନ୍ୟବାଦ ।

ମିସେସ୍ ଖାନ୍—No, no ସେମିତି କହନ୍ତୁ ନାହିଁ ... ହେବନାହିଁ । You deserve more than that. ମୁଁ ମାଲିକଙ୍କୁ କହି ତୁମର contract ଆଉ ତିନିମାସ ପାଇଁ ବଢ଼େଇ ଦବାର ବ୍ୟବସ୍ଥା କରୁଚି ।

ତୁଷାର—ମୋର କିନ୍ତୁ କିଛିଦିନ ଛୁଟିର ପ୍ରୟୋଜନ ଥିଲା ।

ମିସେସ୍ ଖାନ—ଛୁଟି ? ତମେ ଛୁଟିଚାହଁ । ଏଇ seasonରେ ସେଇଟା ଅସମ୍ଭବ, impossible.

ତୁଷାର—Believe me, ଛୁଟି ମୋର ନିହାତି ଦରକାର ।

ମିସେସ୍ ଖାନ୍—ଦେଖ ତୁଷାର, ଚାହିଁଲେ ମଣିଷ ସବୁକିଛି ପାଇପାରେନା । ଏଇ ଯେମିତି ମୁଁ ତୁମକୁ ଚାହେଁ; କିନ୍ତୁ ପାଇପାରେନା ।

[ମିସେସ୍ ଖାନ୍ ତୁଷାରକୁ ଭିଡ଼ିଧରିଲେ ବାହୁପାଶରେ]

ତୁଷାର—Sorry, ମୋ ଦେହ ଭଲ ନାହିଁ । ସେଥିପାଇଁ ମୁଁ ଦୁର୍ବଳ ହୋଇପଡ଼ିଛି । ଡାକ୍ତର କହୁଛନ୍ତି ମୋର rest ଦରକାର । ଅନ୍ତତଃ କିଛିଦିନପାଇଁ ।

ମିସେସ୍ ଖାନ୍—I see, ବୁଝିଲି । ଦେହ ଖରାପ ହେଉଛି ବୋଲି ବାହାନାକରି ତୁମେ କୌଣସି girl friendକୁ ନେଇ week end କରିବାକୁ ଯିବ । ସୁନ୍ଦରଯୋଜନା, କୁହନା ।

ତୁଷାର—Stop ମିସେସ୍ ଖାନ୍, ମୁଁ holidaying କରିବାକୁ ଦାର୍ଜିଲିଂ ଆସିନି । ଆପଣଙ୍କ ହୋଟେଲରେ ମୁଁ ଚାକିରି କରିବି ଟଙ୍କା ନେଇ, girl friend ନେଇ ବୁଲିବାକୁ । ଆପଣ ବୁଝିପାରିବେ ନାହିଁ ମୋର ପରିସ୍ଥିତି । କି ପରିସ୍ଥିତିରେ ପଡ଼ି ମୁଁ ହୋଟେଲରେ ଗୀଟାର୍ ବଜାଉଛି ।

ମିସେସ୍ ଖାନ୍—Sorry ତୁଷାର । ମୋର ଭୁଲହୋଇଛି । ସତରେ ତମେ କ'ଣ ଅସୁସ୍ଥ ?

ତୁଷାର—Girl friend ନେଇ week end କରିବାକୁ ମୋର ସମୟ ନାହିଁ ମିସେସ୍ ଖାନ୍ । ମୋତେ ଦରକାର ଟଙ୍କା, ଅନେକ ଟଙ୍କା, to meet the hard realities of my life.

ମିସେସ୍ ଖାନ୍—କେତେ ଦରକାର ତମର ? I mean କେତେ ହେଲେ ଚଳିବ ?

ତୁଷାର—ହେଉଦରକାର ।

ମିସେସ୍ ଖାନ୍—ବେଶ୍ । ହୋଟେଲ ମାଲିକଙ୍କୁ ମୁଁ ଖବର ଦେଇଦେବି । ତା'ପରେ ତୁମକୁ check issue କରିଦେବ । କ'ଣ ଏଥର ତୁମେ ଖୁସି ତ ? Now smile.

ତୁଷାର—ଧନ୍ୟବାଦ୍ ମିସେସ୍ ଖାନ୍ । ଆଜି ଦୟାକରି ଅନ୍ତତଃ ତିନିଦିନ ଛୁଟି କରେଇ ଦିଅନ୍ତୁ ।

ମିସେସ୍ ଖାନ୍—ନା ତୁଷାର ! ଟଙ୍କା ଆଉ ଛୁଟି ଦୁଇଟାଯାକ ଏକାବେଳେ ଆଶା କରିବା ଅନ୍ୟାୟକଥା । ଏଇ ଟୁରିଷ୍ଟ ସିଜନ୍‌ରେ ତମକୁ ଛୁଟିଦବ କିଏ ?

ତୁଷାର—କିନ୍ତୁ ରାତି ରାତି ଅନିଦ୍ରାରହି ମୁଁ ଦୁର୍ବଳ ହୋଇପଡ଼ିଚି । ଡାକ୍ତରମାନେ ମୋତେ ଛୁଟି ନବାପାଇଁ advice କରିଛନ୍ତି ।

ମିସେସ୍ ଖାନ୍—ଡାକ୍ତରମାନଙ୍କ advice ଭୁଲିଯାଆନ୍ତୁ । Better take my advice.

ତୁଷାର—କ'ଣ କହନ୍ତୁ ।

ମିସେସ୍ ଖାନ୍—Start drinking, I mean ପ୍ରତିଦିନ କେଇ ପେଗ୍ ମଦ ଖାଇବା ଅଭ୍ୟାସକର । ସେଥିପାଇଁ ତମର ପଇସା ଖର୍ଚ୍ଚକରିବା ବି ଦରକାର ହବନାହିଁ । ମୁଁ ତୁମକୁ ଭଲ ବିଦେଶୀ ମଦ ଯୋଗାଇଦେବି ।

ତୁଷାର—ମଦ !!!

ମିସେସ୍ ଖାନ୍—Exactly, you need some extra energy.

ତୁଷାର—କିନ୍ତୁ ତା'ବୋଲି ମୁଁ ନିୟମିତ ମଦ ପିଇବି ?

ମିସେସ୍ ଖାନ୍—ଆହା, ତୁମେ ତ ମଉଜ ମଜଲିସ୍‌ପାଇଁ ମଦ ପିଇବନାହିଁ । କାମ କରିବାପାଇଁ ତମେ ପିଇବ । ଯୋଉ କାମପାଇଁ ତମେ ପାଇବ ଟଙ୍କା । ପ୍ରଚୁର ଟଙ୍କା ।

ତୁଷାର—ନା, ନା ମିସେସ୍ ଖାନ୍—ମଦପିଇ ମୁଁ ହୁଏତ ଭୁଲିଯିବି ମୋର ରୋଗିଣୀ ମାଆକୁ, ଭୁଲିଯିବି ବାପାଙ୍କର କରଜ, ଭୁଲିଯିବି ଜୀବନର ସବୁ ଯନ୍ତ୍ରଣା, ଭୁଲିଯିବି ମୋର ଦାରିଦ୍ର୍ୟ, No Mrs. ଖାନ୍, ମଦ ନ ପିଇ ମୁଁ ରାତି ଜାଗିବାକୁ ଚେଷ୍ଟା କରିବି । [ତୁଷାର କହୁକହୁ ଚାଲିଗଲା]



## ପଞ୍ଚମ ଦୃଶ୍ୟ

[ ଯାଚକଙ୍କର guest houseର ସେଇ ରୁମ୍ । Fire placeରେ ନିଆଁ ଜଳୁଚି । ଉଇଲିୟମ୍ ସେଇ ନିଆଁ ଆଡ଼କୁ ମୁହଁକରି ବସିଥିଲେ । ମୁହଁରେ ଚୁରୁଟ୍ । ପରିଧାନ୍ ଗରମ ଓଭର କୋଟ୍-। ଏଠିକବେଳେ ଭିତରୁ ପାଟିକରି ଆସିଲେ ଯାଚକ । ]

ଯାଚକ—ଯେତେ ଚେଷ୍ଟା କଲେ ବି ମନୀଷ ଏ ଘରେ ପାଟି ନ କରି ରହିପାରିବ ନାହିଁ । ଆଜି ଗୋଟାଏ week end, ସମସ୍ତଙ୍କର ଛୁଟି, ହେଲେ ମୋର ଛୁଟି ନାହିଁ । ପାଟିକରିବାଟା ମୋର ଅଭ୍ୟାସ ହେଇଗଲାଣି । ଚଉକିଗୁଡ଼ାକୁ ଝାଡ଼ିବାକୁ ହୁଆହେଇନି । Wash basinଗୁଡ଼ାକ clean କରାହେଇନି । ଖଟଗୁଡ଼ାକରେ D. D. T. ପକାହେଇନି, ବେଡସିଟ୍, ପିଲୋ କଭର ସବୁ ଯେଉଁଠାରେ ପଡ଼ିଛି, Every thing in a state of chaos—ଯୋସେଫ୍, ଯୋସେଫ୍...

ଯୋସେଫ୍—(ଭିତରୁ ଆସି) Yes sir.

ଯାଚକ—ସରୋଜ ବାବୁ ଆଜି ଟଙ୍କାଦେବେ କହିଥିଲେ । ଯା, ମାଗିଆଣିବୁ ।

ଯୋସେଫ୍—ସରୋଜ ବାବୁ ଆଉଟ୍ ସାର୍ । ରୁମ୍ ଲକ୍ ଅପ୍ ।

ଯାଚକ—ହଁ, ଟାଳଟୁଳ କରି ଦେଇଯିବେ ନାହିଁ କାହିଁକି ? ବାବୁ week-end କରିବାକୁ ଯାଇଛନ୍ତି । ମତେ ଦେଲାବେଳକୁ ସିନା ଟଙ୍କାନାହିଁ ହେଲେ ମଉଜ ମଜଲିସ୍, ଫୁର୍ତ୍ତି ସବୁଗୁଲଚି । ହଉ, ମୁଁ କାଲି ଦେଖୁଚି । ସକାଳୁ ସେମାନଙ୍କୁ ଗୋଟାଏ warning ଦବାକୁ ହବ । ଦରକାର ପଡ଼ିଲେ meal stop କରିବାକୁ ହେବ ।

ଯୋସେଫ୍—Yes sir.

ଉଇଲ୍ସନ୍—ହଠାତ୍ ମଦର ଦାମଟା ବଢ଼ିଗଲା । ଦୁନିଆରେ ଯେମିତ ଦାମ୍ ବଢ଼ିବାପାଇଁ ଆଉ କିଛି ଜିନିଷ ନାହିଁ । ଏଣିକି ମୋର daily allowance ପାଞ୍ଚ ଟଙ୍କାରେ ଚଳିବନାହିଁ । ଗର୍ଭମେଣ୍ଟକୁ ଏଟା ବଢ଼ାଇ ଦବାକୁ ପଡ଼ିବ ।

ଯାଚକ—ଆଚ୍ଛା, ମୋ ସଙ୍ଗରେ କ'ଣ ଟଙ୍କାଛଡ଼ା ଆଉ କିଛିକଥା କହିବାକୁନାହିଁ ?

ଉଇଲ୍ସନ୍—ତୁମ ସାଙ୍ଗରେ ଟଙ୍କାଛଡ଼ା ଆଉ କିଛି କଥା କୁହାଯାଇପାରେନା । କାରଣ ତୁମେ କେବଳ ଚନ୍ଦ୍ର ଟଙ୍କା—ଆଉ କିଛି ନୁହେଁ ।

ଯାଚକ—ହଉ ଠିକ୍ ଅଛି । ଏଇ ଟଙ୍କା ନେ । ଆଜି ମୋର ବାହାରେ ବହୁତ କାମ ଅଛି । ଲିସା ଘରେ ଏକା । ତୁ ଘରଛାଡ଼ି କୁଆଡ଼େ ଯିବୁନାହିଁ ।

ଉଇଲ୍ସନ୍—କାହିଁକି ?

ଯାଚକ—ଏଡ଼ୱାର୍ଡ୍ ଅଛି । ତା'ର ଯେମିତ କିଛି ଅସୁବିଧା ନ ହୁଏ । ତା'ର comfort ପାଇଁ ମୁଁ ଲିସାକୁ necessary advice ଦେଇଯାଉଛି । ତୋତେ ସେଥିପାଇଁ ମୁଣ୍ଡଖେଳେଇବାକୁ ପଡ଼ିବ ନାହିଁ ।

[ କେତେଖଣ୍ଡ ନୋଟ୍, ଉଇଲ୍ସନ୍ ହାତରେ ଦେଇ ଯାଚକ ଗ୍ଲଗଲେ । ]

ଉଇଲ୍ସନ୍—ଯୋସେଫ୍, ଯୋସେଫ୍ ।

ଯୋସେଫ୍—Yes sir, coming sir.

ଉଇଲ୍ସନ୍—(ପାଞ୍ଚଟଙ୍କା ଦେଇ) ନେ, ଏଇ ଟଙ୍କାରେ ରମ୍ ନେଇଆ ।

ଯୋସେଫ୍—Only five rupees sir ?

ଉଇଲ୍ସନ୍—ମୋ ନାଁ କହିବୁ । ବାକିଟଙ୍କା ସିଏ ପରେ ନବ ।

ଯୋସେଫ୍—ବାକି not give sir.

ୱିଲିୟମ୍—ଦେବ । ମୁଁ କହୁଛି ମୋ ନାମ କହିବୁ । ସବୁଦିନେ ନଗଦ ପଇସା ଦେଉଛି । ଦିନେ ବାକି ଦେବନାହିଁ ?

ଯୋସେଫ୍—No sir. [ଏଡ୍‌ୱାର୍ଡ଼ର ପ୍ରବେଶ]

ଏଡ୍‌ୱାର୍ଡ଼—କ'ଣ ହେଉଛି ଅଙ୍କଲ୍ ?

ୱିଲିୟମ୍—ଅଚ୍ଛା, କହିଲ ଏଡ୍‌ୱାର୍ଡ଼, ଯୋଉଁ ଦୋକାନୀ ମୋତେ ବର୍ଷବର୍ଷ ଧରି ନଗଦ ପଇସାରେ ମଦ ଦେଉଛି ଆଜି ଦିନଟା ସିଏ creditରେ ମଦ ଦେବନାହିଁ ?

ଏଡ୍‌ୱାର୍ଡ଼—କାହିଁ credit କାହିଁକି ? କୁହନ୍ତୁ କେତେ ଟଙ୍କା ଦରକାର ? ମୁଁ ଦେଉଛି ।

ୱିଲିୟମ୍—ଓଃ ତମେ ମୋତେ ବଞ୍ଚେଇଦେଲ ଏଡ୍‌ୱାର୍ଡ଼, ଆଜି ଦିନଟା ମୋର ନଷ୍ଟ ହୋଇଥାଆନ୍ତା ।

ଏଡ୍‌ୱାର୍ଡ଼—(ଟଙ୍କାଦେଇ) ଯୋସେଫ୍ ଏଇ ଟଙ୍କା ନେ, ଯା' ଅଙ୍କଲଙ୍କପାଇଁ best qualityର ହ୍ୱିସ୍କି ଆଣିବୁ ।

ୱିଲିୟମ୍—ଆରେ ନା, ନା ତାକୁ ଟଙ୍କା ଦେଉଚ କାହିଁକି ? ସେଇଟା best quality କ'ଣ ବୁଝେ ? ମତେ ଦିଅ, ମୁଁ ନିଜେ ନେଇଆସୁଛି । ..

ଏଡ୍‌ୱାର୍ଡ଼—(ଯୋସେଫ୍ ହାତରୁ ଟଙ୍କାଆଣି ୱିଲିୟମ୍‌ଙ୍କ ହାତରେ ଦେଲେ)

ୱିଲିୟମ୍—ଏଡ୍‌ୱାର୍ଡ଼ you are great. ଏ ଯୋସେଫ୍ ତୁ ଥିବୁ ! କୁଆଡ଼େ ଯିବୁନାହିଁ, ମୁଁ ସାଙ୍ଗେସାଙ୍ଗେ ଆସୁଛି । [ପ୍ରସ୍ଥାନ]

ଏଡ୍‌ୱାର୍ଡ଼—ଯୋସେଫ୍, ମୋତେ ଆଜି କଫି ଦେଇନୁ ?

ଯୋସେଫ୍—ଆସୁଛି ସାର୍ । [ଭିତରୁ କଫି ଟ୍ରେ ନେଇଆସିଲ ଲିସା ନିଜେ].

ଲିସା—I am sorry, ଦୋଷଟା ଯୋସେଫ୍‌ର ନୁହେଁ । Daddy ମୋତେ କହିଯାଇଚନ୍ତି ଆପଣଙ୍କର ସବୁକିଛୁ ବ୍ୟବସ୍ଥା ବୁଝିବାକୁ ।

ଏଡ଼ଓ୍ୱାର୍ଡ଼—ଆରେ ନା, ନା ତମର ଆଉ ଦୋଷ କ'ଣ ? ମୁଁ ତ ଜାଣିନ ଯେ, ଆଜି ସକାଳଟା ଆରମ୍ଭହବ ତମର ହ୍ୱାଇଟଆଉ କଫିରେ ।

ଲିସା—Daddy ଯେତେବେଳେ ନାହାନ୍ତି, ତମର ଖବର ମୋତେ ହିଁ ବୁଝିବାକୁ ପଡ଼ିବ ।

ଏଡ଼ଓ୍ୱାର୍ଡ଼—ଏଇଟା ହେଲା ଫାର୍ମାଲିଟିର କଥା । Daddy ଥିଲେ ତମେ କ'ଣ ମୋ କଥା ବୁଝନ୍ତ ନାହିଁ ? ଦେଖ ଲିସା, ମୁଁ କେବଳ ତମ ପାଇଁ ଏଠି ରହୁଛି । ନ ହେଲେ ମୋର ଗୋଟାଏ ବଙ୍ଗଳେ ଥାଉଁଥାଉଁ ମୁଁ guest houseରେ ପଡ଼ିରହି ଥାଆନ୍ତି ?

ଲିସା—କଫିଟା ଥଣ୍ଡାହେଇଗଲା, ଖାଇନିଅନ୍ତୁ ।

ଏଡ଼ଓ୍ୱାର୍ଡ଼—Damn it. ଆଜିଭଳି ଦିନରେ କଫି କଥା ଥାଉ, ଆଉ କିଛି କୁହନା । Something else, something sweet, something romantic. କୁହନା, ତୁମେ କହିବ ଆଉ ମୁଁ ଶୁଣିବି ।

ଲିସା—ଆଜିକାର lunch menuଟା ଆପଣ suggest କଲେ ଭଲହୁଅନ୍ତା ।

ଏଡ଼ଓ୍ୱାର୍ଡ଼—No lunch, no dinner; ଚାଲ ଲିସା ଆମେ ବାହାରକୁ ଯିବା । ଯେଉଁ ହ୍ରଦ କୂଳକୁ କିମ୍ବା କ୍ଲବକୁ ।

ଲିସା—କିନ୍ତୁ daddy ଯେ ନାହାନ୍ତି ।

ଏଡ଼ଓ୍ୱାର୍ଡ଼—Exactly Lisa deara. daddy ନାହାନ୍ତି, uncle ନାହାନ୍ତି, କେହି ନାହାନ୍ତି । We are left alone. ଏମିତି ଗୋଟିଏ ଦିନକୁ ମୁଁ ଅନେକ ଦିନ ହେଲା ଅପେକ୍ଷା କରିଥିଲି । Let us not spoil this lovely day.

ଲିସା—କିନ୍ତୁ daddy ଘରେ ନ ଥିଲେ ମତେ ତ ସବୁ ବୁଝିବାକୁ ପଡ଼େ ।

[ଲିସାର ହାତକୁ ଧରନେଇ]

ଏଡ୍‌ୱାର୍ଡ଼—କାହିଁକି ? ମନେକରନଅ ତମ daddy ଜାଣିଜାଣି ଆମକୁ ଏମିତି ଗୋଟିଏ ସୁଯୋଗ ଦେଇଛନ୍ତି । To be alone, to be together, to be closer.

ଲିସା—Excuse me. Daddyଙ୍କର ଅନୁମତି ନ ନେଇ କୁଆଡ଼େ ଯିବା ମୋ ପକ୍ଷରେ ଅସମ୍ଭବ ।

ଏଡ୍‌ୱାର୍ଡ—ତା'ହେଲେ ତମେ ମୋ ସାଥିରେ ଯିବନାହିଁ ?

ଲିସା—I am sorry.

[ ଏହିକବେଳେ ଯୋସେଫ୍ ଆସି ଗୋଟିଏ ଥର୍ମୋମିଟର ଲିସା ହାତକୁ ବଢ଼େଇ ଦେଇଛି । ]

ଯୋସେଫ୍—Very high fever.

ଲିସା—(ଥର୍ମୋମିଟର ଦେଖି) ହୁଁ 105 temperature. ଯୋସେଫ୍ ice bagଟା ରେଡ଼ିକର ।

ଯୋସେଫ୍—Yes Madam.

ଏଡ୍‌ୱାର୍ଡ଼—ତମର ଏଇ ରୋଗୀଟି କିଏ ଲିସା ?

ଲିସା—ତୁଷାର ବାବୁଙ୍କ ଦେହ ଅସୁସ୍ଥ ।

ଏଡ୍‌ୱାର୍ଡ଼—ଓ, ସେଇଥିପାଇଁ ତମେ ମୋ ସାଥିରେ ଯିବନି । ତମେ ଘରେ ରହୁଛ ମୋତେ companyଦବାକୁ ନା, ତୁଷାର ବାବୁଙ୍କ ସେବା କରିବାକୁ ?

ଲିସା—ହଠାତ୍ ତୁଷାର ବାବୁ ଅସୁସ୍ଥ ହୋଇପଡ଼ିଛନ୍ତି । ତାଙ୍କ ଅବସ୍ଥା serious.

ଏଡ୍‌ୱାର୍ଡ଼—Serious ହେଲେ ambulance ଡାକ hospital ପଠେଇଦିଅ ।

[ ଏହିକବେଳେ ତୁଷାର ଗୋଟିଏ ଗୃହର ଯୋଡ଼ିହୋଇ ପାଗଳ ପରି ଏଣ୍ଟ୍ରେନ୍ସ୍ କହୁ ଚଶିଆସିଚ ସେଇ ରୁମ୍‌କୁ । ]

ତୁଷାର—ମୁଁ ପାରିବନି, ମୁଁ ପାରିବନି ମିସେସ୍ ଖାନ୍, ଆଉ ମୁଁ violin ବଜେଇ ପାରିବନି । [ଲିସା ତୁଷାରଙ୍କୁ ଧରି ଗୋଟିଏ ସୋଫାରେ ବସାଇଦେଇଛି]

ଲିସା—ତୁଷାର ବାବୁ ' ଆପଣ ବିଛଣାରୁ ଉଠିଆସିଲେ କାହିଁକି ? ଯୋସେଫ୍, ଯୋସେଫ୍—ତୁଷାର ବାବୁଙ୍କୁ ତାଙ୍କ ରୁମ୍‌କୁ ନେଇଯା' ।

ଏଡ଼ଓ୍ୱାର୍ଡ଼—ତା'ହେଲେ ଏଇ ତମର ତୁଷାର ବାବୁ ନା ? ହଉ daddy ଆସନ୍ତୁ; ମୁଁ ସବୁ କହିବି, and I will vacate this guest house.

[ଯୋସେଫ୍ Ice capଟା ଆଣି ଲିସାକୁ ବଢ଼େଇ ଦେଇଛି, ଲିସା ଲମ୍ବ sofa ଉପରେ ତୁଷାରଙ୍କୁ ଶୁଆଇଦେଇ, ତାଙ୍କ ମୁଣ୍ଡରେ Ice cap ଦେଇ ଯୋସେଫ୍‌କୁ ଧରିବାକୁ କହନ୍ତି । ]

ଯାଚକ—(ପ୍ରବେଶ) ଓଃ ବାହାରେ କି ବଡ଼ଫଟିଡ଼ !!! କୁଆଡ଼େ ଯାଇପାରିଲି ନାହିଁ । ବାଧ୍ୟହୋଇ ଫେରିବାକୁ ପଡ଼ିଲା ! ତମର କିଛି ଅସୁବିଧା ହୋଇନାହିଁ ତ ଏଡ଼ଓ୍ୱାର୍ଡ଼ ?

ଏଡ଼ଓ୍ୱାର୍ଡ଼—ନା, ମୋର କିଛି ହେଇନି । ଅସୁବିଧା ହେଉଛି ଲିସାର ।

ଯାଚକ—ମାନେ ?

ଏଡ଼ଓ୍ୱାର୍ଡ଼—ମୋତେ ନ ପଚାରି ସେ କଥା ଆପଣଙ୍କ ଝିଅକୁ ପଚାରନ୍ତୁ ।

[ଯାଚକ ଦେଖିଲେ ତୁଷାର ସୋଫାରେ ଶୋଇଛି, ତା'ପାଖରେ ଛିଡ଼ାହୋଇଛି ଯୋସେଫ୍ ଆଉ ଲିସା । ]

ଲିସା—ତାଙ୍କର temperature 105° Fdaddy, ଶୀଘ୍ର ଡାକ୍ତର ଡାକିବାକୁ ହେବ ।

ଯାଚକ—ତୋ'ର ସେଥିପାଇଁ ମୁଣ୍ଡବ୍ୟଥା କାହିଁକି ? (ରାଗରେ ଯୋସେଫ୍ ହାତରୁ Ice capଟା ଫିଙ୍ଗିଦେଲେ) ତୋର ସେଥିରେ କ'ଣ ଅଛି ?

ତୁ ଭିତରକୁ ଯା' । ଊଇଲସ୍ୱମ୍‌ଙ୍କୁ ଗ୍ରଣ୍ଡଦେଇ କୁଆଡ଼େଯିବା ମୋତେ ସୁବିଧାଜନକ ନୁହେଁ । ଯୋସେଫ୍ Willium କାଇଁ, ଡାକିଲୁ ।

ଲିସା—(ନିରବରେ) ମୁହଁ ତଳକୁକରି ଚ୍ଲିଯାଇଛୁ !

ଯାଚକ—ତମେ ବି ଭିତରକୁ ଯାଅ ଏଡ଼ୱାର୍ଡ଼ । କ'ଣ ହେଇଚି ମୁଁ ବୁଝୁଚି ।

ଯାଚକ—ଯୋସେଫ୍, ତୁଷାର ବାବୁଙ୍କ ଦେହ ଅସୁସ୍ଥବୋଲି ମୋତେ ସକାଳୁ କହିଲୁ ନାହିଁ କାହିଁକି ?

ଯୋସେଫ୍—Sorry sir.

ଯାଚକ—କ'ଣ ? sorry sir. କହ, ସତ କହ ।

ଯୋସେଫ୍—Miss ମନେ କରିଥିଲି ସାର୍ ।

ଯାଚକ—Is it ? ଯା' ତୁ ଭିତରକୁ ଯା'—ମୁଁ ଆଜି ସମସ୍ତଙ୍କୁ ଠିକ୍ କରିଦଉଚି ।

[ଊଇଲସ୍ୱମ୍ ବାହାରୁ ଆସିଛନ୍ତି । ହାତରେ ଗୋଟାଏ ଅଧା ମଦ ବୋତଲ । ଚ୍ଲି ଅସନ୍ତୁଳ । ]

ଯାଚକ—ତୋତେ ଘର ଜଗାଇ ଦେଇ ଯାଇଥିଲି । କ'ଣ ହେଇଚି ଏଠି ସବୁ ?

ଊଇଲସ୍ୱମ୍—ମୁଁ ଦଶ ମିନିଟ୍ ପାଇଁ ଦୋକାନକୁ ଯାଇଥିଲି । କ'ଣ ହେଇଚି ?

ଯାଚକ—କ'ଣ ହେଇଚି ମୁଁ ତୋତେ ବୁଝେଇ ପାରିବି ନାହିଁ । ତୁ ଆଗେ ଏଇ ପିଲଟାକୁ ଘରୁ ବାହାରକରୁ ।

[ ଧୁମ୍‌ଧୁମ୍ କରି ଭିତରକୁ ଚ୍ଲିଗଲେ ଯାଚକ । ଊଇଲସ୍ୱମ୍ ତୁଷାର ନିକଟକୁଯାଇ ବିରକ୍ତିରେ ତାର ଗୋଟାଏ ବାହୁଧରି ଉଠାଇଲେ । ]

ତୁଷାର—ଲିସା, ଟୋପେ ପାଣି···ଟିକିଏ ପାଣି । (ଲିସା ବଦଳରେ ଊଇଲସ୍ୱମ୍‌ଙ୍କୁ ଦେଖି) uncle ଟିକିଏ ପାଣି···No water, you will have to vacate now.

ତୁଷାର—ଯିବି କୁଆଡ଼େ uncle, ମୋ ଦେହ ଯେ ଭଲନାହିଁ ।

ଊଇଲସ୍ୱମ୍—Go to hell.

ତୁଷାର—କିନ୍ତୁ କଣର ଶିବ uncle ?

ୱଇଲସ୍ମନ—ସେକଥା ମୁଁ ଜାଣେନା । ତମକୁ ଯିବାକୁହବ । Yes, just now. ଆମେ ଗ୍ରହୁଁ ନା, ତମପାଇଁ ଏଇ guest houseର ଆଇନ୍ ଶୃଙ୍ଖଳା ସବୁ ନଷ୍ଟହବ । Get out-or else, I will have to throw you out.

ତୁଷାର—(ସୋଫାରୁ ଧୀରେ ଧୀରେ ଉଠିଲେ) ଶିବ uncle ଯିବ; କିନ୍ତୁ ଦେଖନ୍ତୁ ବାହାରେ ଝଡ଼ହେଉଛି । ମତେ ଟିକଏ ସମୟ ଦିଅନ୍ତୁ ।

ୱଇଲସ୍ମନ୍—(ତୁଷାରକୁ ଠାଣିଠାଣି ଧକ୍କା ଦେଇ ବାହାରକୁ ଠେଲିଦେଲେ)

ଲିସା—(ପ୍ରବେଶ କରି) ତୁଷାର ବାବୁ···ତୁଷାରକୁ ନ ଦେଖି ୱଇଲସ୍ମନକୁ କହିଲେ) ସେ କ'ଣ ଚାଲିଗଲେ uncle ?

ୱଇଲସ୍ମନ୍—ମୁଁ ତାକୁ ବାହାର କରିଦେଲି । He has gone for ever.

ଲିସା—(ଲୁହ ଆଖିରେ) Uncle ଆପଣ ତାଙ୍କୁ ଏମିତି ଅବସ୍ଥାରେ, ଏଇ ବରଫ ଝଡ଼ ଭିତରେ ବାହାର କରିଦେଲେ ?

ୱଇଲସ୍ମନ୍—(ମଦ ବୋତଲ ମୁହଁରେ ଦେଇ) ସେତ କିଛି ନୂଆ କଥା ନୁହେଁ । ଏଇ guest houseରୁ କେତେ borderଙ୍କୁ ନିକାଲି ଦେଇଛି । ଆଜି ସେମିତି ଜଣେ ଗଲା । ତା'ପାଇଁ ଦୁଃଖ କାହିଁକି ? ହାଃ-ହାଃ-ହାଃ, ଏଠିକାର ଡିସିପ୍ଲିନ୍ ମୋ ଦାୟିତ୍ୱ । I am paid for that. (ବୋତଲରୁ ମଦ ଶେଷକରି) ହାଃ-ହାଃ-ହାଃ; କିନ୍ତୁ ସେଥିରେ ତୋର କ'ଣ ହେଉଛି ଲିସା ?

ଲିସା—ତମେ କିଛି ବୁଝିବ ନାହିଁ uncle ତମେ କିଛି ବୁଝିପାରିବ ନାହିଁ । (ଭିତରକୁ ଚାଲିଗଲା ଲିସା)

ୱଇଲସ୍ମନ୍—ଲିସା, ଲିସା, ଲିସା···



# ଦ୍ୱିତୀୟ ଅଙ୍କ

## ପ୍ରଥମ ଦୃଶ୍ୟ

[ ଯାଚକଙ୍କ paying guest houseର ସେଇ drawing room. ସମୟ ସନ୍ଧ୍ୟା ସାତଟା । ରେଡ଼ିଓରେ ବାଜୁଥିଲା ଏକ କରୁଣ ମୂର୍ଚ୍ଛନା । ଲିସା ଗୋଟାଏ ସ୍ୱେଟର ବୁଣିଚାଲିଥିଲା; ସେ ସନ୍ଧ୍ୟା କଣପାଶନ୍ନ ରେଡ଼ିଓରେ ସେଇ କରୁଣ ରାଗିଣୀ । ସୋଫାରୁ ଉଠିଯାଇ ସେ ରେଡ଼ିଓ ବନ୍ଦକଲା । ସ୍ୱେଟର ବୁଣା ବନ୍ଦକରି ସେ ଛିଡ଼ାହେଲା କାଚ ଝରକାର ବାଲକୋନରେ । ଦୂରପାହାଡ଼ ଦେହରେ ଲାଗି ଭାସା ବାଦଲଗୁଡ଼ିକୁ ଲିସା ଦେଖୁଥିଲା । କିଛି ସମୟ ପରେ ବାହାରୁ ପ୍ରବେଶ କରନ୍ତି ଯାଚକ । ତାଙ୍କ ହାତରେ ଗୋଟିଏ ନୂଆ ଲେଡ଼ିଜ୍ କୋଟ୍ । ଲିସା ମୁହଁ ଫେରେଇ ଯାଚକଙ୍କୁ ଦେଖିଲା । ]

ଲିସା—ଡ୍ୟାଡ଼ି ?

ଯାଚକ—ଏଇ କୋଟ୍‌ଟା ପିନ୍ଧକରି ଦେଖ୍ ତ ମା' କେମିତି ହୋଇଛି । (କୋଟ୍‌ଟି ଲିସା ଦେହରେ ଗଳେଇଦେଲେ)

ଲିସା—(ଶୁଷ୍କ ମୁହଁରେ) ଭଲ ।

ଯାଚକ—ଶୀତ ଆସିଗଲା । ତୁ ତ ଏବର୍ଷ କିଛି କିଣିଲୁ ନାହିଁ ମା; ମୋର ମନେପଡ଼ିଗଲା । ଆଜି ବଜାରରୁ ଏଇଟା କିଣିଆଣିଲି ।

ଲିସା—କ'ଣ ଦରକାରଥିଲା ଡ୍ୟାଡ଼ି ? ଯାହା ପୁରୁଣା ଅଛି ସେଇଥିରେ ଏବର୍ଷଟା ଚଳିଯାଇ ଥାଆନ୍ତା ।

ଯାଚକ—ନା, ମା' ସେମିତି କହନା, ତୋପାଇଁ ଟଙ୍କାର କ'ଣ ଅଭାବ ଅଛି ? ତୋର ଯାହା ଦରକାର ନିଜେ ପସନ୍ଦକରି କିଣ । କହିଲୁ ଏଇଟା ତୋର ପସନ୍ଦ ହେଉଛି କି ନାହିଁ ?

ଲିସା—(ଯନ୍ତ୍ରଚାଳିତ ପରି) ହଁ ଭଲ ହେଉଛି ।

ଯାଚକ—ଖାଲି ଭଲହେଉଛି କହିଲେ ହବନାହିଁ । ଏଇଟା ତୋତେ ସୁନ୍ଦର ମାନୁଛି । ଏଣିକି ଏଡ଼ୱାର୍ଡ଼ ସାଙ୍ଗରେ ଯେତେବେଳେ ବାହାରକୁଯିବୁ; ଏଇଟାକୁ ପିନ୍ଧିକରି ଯିବୁ । ଆରେ ହଁ, ଏଡ଼ୱାର୍ଡ଼ର କାହିଁ ଦେଖାନାହିଁ । ସେ କ'ଣ ବାହାରକୁ ଯାଇଛି ? ତୋତେ ତ କିଛି କହିଯାଇନି...ନା, କ'ଣ ?

ଲିସା—ନା ଡ୍ୟାଡ଼ି ।

ଯାଚକ—ବାହାରକୁ ଯାଇଥିଲେ ତୋତେ କିମ୍ବା ମୋତେ କହିକରି ଯାଇଥାଆନ୍ତା । ତୁ ବି ଦେଖୁଛି ତା'ର କିଛି ଖବର ରଖୁନୁ । ତୋର କ'ଣ ହେଉଛି ମା', ଆଗଭଳି ତୁ ଗୀତଗାଉନୁ, ପିଆନୋ ବଜାଉ ନାହୁଁ ?

ଲିସା—ମୋ ଦେହ ଭଲନାହିଁ ଡ୍ୟାଡ଼ି ।

ଯାଚକ—ଦେହ ଭଲନାହିଁ ଯଦି ମୋତେ ଆଗରୁ କହିଲୁ ନାହିଁ କାହିଁକି ମା' ? କାଲି ତୋତେ Dr. ପଟ୍ଟନାୟକଙ୍କ clinicକୁ ନେଇଯିବି । ସେ ତୋତେ ଦେଖି ଔଷଧ ଦିଅନ୍ତୁ ।

ଲିସା—ନା, ଡ୍ୟାଡ଼ି କିଛି ଦରକାର ନାହିଁ ।

ଯାଚକ—ଦେଖ୍ ଲିସା; ତୁ ଆଜି ପିଲା ନୁହଁ । ତୋତେ ଆଉ ବୁଝେଇବାକୁ ପଡ଼ିବନାହିଁ । ତୁମ୍ଭର ଆଉ ଏଡ଼୍‌ଓ୍ୱାର୍ଡ଼ ଭିତରେ ପ୍ରଭେଦଟା ତୁ ନିଜେ ବିଚାରକରି ଦେଖ; ଆଜି ନ ବୁଝିଲେ ବି ଦିନ ଆସିବ ତୁ ସବୁ ନିଜେ ବୁଝିବୁ ।

ଲିସା—ମୁଁ ତ କିଛି କହୁନି ଡ୍ୟାଡ଼ି ।

ଯାଚକ—ତୁ ନ କହିଲେ ବି ମୁଁ କ'ଣ ଜାଣିପାରୁନି ତୁମ୍ଭର ଗଲାଦିନରୁ ତୁ ସବୁବେଳେ ମନମାରି ବସୁଛୁ । ଖାଇବା ପିଇବାରେ କିଛି ଠିକ୍ ନାହିଁ । ଏମିତି ଯଦି ନିଜ ଦେହ ଉପରେ ଅତ୍ୟାଚାର କରୁ ତା'ହେଲେ ତୋ ଅବସ୍ଥା କ'ଣ ହେବ ?

ଲିସା—ଆପଣ ମିଛରେ ଭାବୁଚନ୍ତି ଡ୍ୟାଡ଼ି । ମୁଁ ଖୁବ୍ ଭଲରେ ଅଛି ।

ଯାଚକ—(ହସିହସି) That's like a good girl. କହ ତ ମା' ମୁଁ ତୋ'ପାଇଁ କ'ଣ ନ କରିଚି ? ପଢ଼ିବାପାଇଁ ତୋତେ ନୂଆ ନୂଆ ବହି ଆଣିଦେଇଚି, ସାଙ୍ଗରେ ନେଇ ତୋତେ ବୁଲିଯାଇଚି, ନିଆମିତ ଚର୍ଚ୍ଚକୁ ନେଇଯାଇଚି, ମିସେସ୍ ସିନ୍‌ହାଙ୍କପରି ପରିବାରରେ ତୋ'ପାଇଁ ଟିଉସନ୍ ଯୋଗାଡ଼ କରିଚି, ତା'ପରେ ବି ତୁ ଯଦି ଏମିତି ଉଦାସ ରହୁ, ତା'ହେଲେ ମୁଁ କହିବି ତୁ ଅନ୍ୟାୟ କରୁଚୁ ।

ଲିସା—ମୋତେ ଯୋଉ କାମ ଦେଇଚନ୍ତି ମୁଁ ତ ଠିକ୍ ସମୟରେ କରିଚି ଡ୍ୟାଡ଼ି ।

ଯାଚକ—ହଁ, ମା' କ୍ଳବରେ ସେଦିନ ଯୋଉ ଗୀତଟା ଗାଇଲୁ ସେଇଟା ସମସ୍ତଙ୍କର ଖୁବ୍ ପସନ୍ଦ ହେଇଚି । ମୋତେ ମିସେସ୍ ଉଇଲସନ୍ ତାଙ୍କ congratulation ଜଣେଇଲେ ସେଇ ଗୀତଟାପାଇଁ । ତୋର ଗଳା ଖୁବ୍ ମିଠା, ଆଉ ନୂଆ ଗୀତ କ'ଣ ଗାଇବୁ ଠିକ୍‌କରିନେ । କ୍ଳବରେ ଯେତେ ଝିଅ ଗୀତ ଗାଉଛନ୍ତି ତୁ ସେମାନଙ୍କଠୁ ଖୁବ୍ ଉପରେ । ସବୁବେଳେ ନୂଆନୂଆ ଗୀତ ହିର୍‌କରି ରଖିଥା ମା' । ପ୍ରତି ରବିବାର କ୍ଳବରେ ଗାଇବୁ । ତୁ ରହ, ମୁଁ ଟିକିଏ ଫୋନ୍‌କରି ଆସେ ।

[ଯାଚକ ଲିସାର ମଥା ଆଉଁସିଦେଇ ଚାଲିଗଲେ ଭିତରକୁ]

ଲିସା—(ଅଶ୍ରୁ ସଜଳ ଆଖିରେ ଉଲ୍ ବୁଣିଚାଲିଲେ)

[ବାହାରୁ ଆସିଛନ୍ତି ଉଇଲିୟମ୍]

ଉଇଲିୟମ୍—ଆରେ ଅନ୍ଧାର ହୋଇଗଲାଣି, ତୁ ବୁଣିଚାଲିଚୁ ମା' । (ଆଲୋକ ଜଳାଇଦେଲେ) ଏତେ ଅନ୍ଧାରରେ ବୁଣିଲେ ତୋ'ଆଖି ଖରାପ ହୋଇଯିବ ।

ଲିସା—ହୋଇଯାଉନା ଅଙ୍କଲ୍ ।

ଉଇଲିୟମ୍—ତୁ ରାଗିଚୁ ମା' ? (ଲିସା ହାତରୁ ଉଲ୍‌ବୁଣା ହୋଇଥିବା ଅଧା ସ୍ୱେଟରଟା ନେଇଗଲେ)

ଲିସା—କାହାର ଉପରେ ରାଗିବାର ବା ଅଭିମାନ କରିବାର ଅଧିକାର ମୋର ନାହିଁ ଅଙ୍କଲ୍ । ତା'ଛଡ଼ା ଉଲ ବୁଣିବା ତ ମୋର ସବୁଦିନର ଅଭ୍ୟାସ ।

ଉଇଲିୟମ୍—ନା, ମା' ଆଗେ ଏସବୁ ଥିଲା ତୋର ସନ୍ଥକ, I mean hobby, ଏବେ କିନ୍ତୁ ମୋର ମନେହେଉଚି ତୁ ଜିଦ୍‌ଧରି ଏସବୁ କରିଯାଉଚୁ ।

ଲିସା—ସମୟ ତ କଟେଇବାକୁ ପଡ଼ିବ ଅଙ୍କଲ ।

ଉଇଲିୟମ୍—ତୁ ଜାଣିଶୁଣି ଗୋଟାଏ ସୁନ୍ଦର ଜୀବନଟାକୁ ହତ୍ୟା କରିବାକୁ ଯାଉଚୁ ଲିସା; କ'ଣ କହୁଚୁ ?

ଲିସା—ନଦୀର ଗତିପଥରେ ଯଦି ମରୁଭୂମି ପଡ଼େ ତେବେ ନଦୀର ଜଳଧାରଟି ଶୁଖିଯିବା ନିଶ୍ଚିତ, ଅଙ୍କଲ୍ ।

ଉଇଲିୟମ୍—ତୁ ଠିକ୍ ସେମିତି ଶୁଖିଶୁଖି ମରିଯିବାକୁ ଯାଉଚୁ । ଦେଖ୍ ଲିସା, ମୁଁ ଆଗେ ତୋଭଳି ଭଲ ମଣିଷ ଥିଲି, sentimental ଥିଲି । ଆଜି ସେଇ ଭଲପଣିଆପାଇଁ ମୁଁ ସାରାଜୀବନ ଅନୁତାପ କରୁଛି ।

ଲିସା—ମୁଁ ତ ସେକଥା କହୁନାହିଁ ଅଙ୍କଲ୍ ।

ୱଇଲିୟମ୍—ମା' ଜାଣିଚୁ ? ଯୁଦ୍ଧରେ ଜଣେ ବନ୍ଧୁର ଜୀବନ ବଞ୍ଚାଇବାକୁଯାଇ ମୋର ଗୋଟିଏ ଗୋଡ଼ ପଙ୍ଗୁ ହୋଇଗଲା । ମୁଁ ଆଜି ତୋ' ଡ୍ୟାଡ୍ଡିର burden ହୋଇ ରହିଚି ।

ଲିସା—ଏଇଥିପାଇଁ କ'ଣ ତମେ ଏତେ ମଦ ପିଉଛ ଅଙ୍କଲ୍ ?

ୱଇଲିୟମ୍—ଏଇଥିପାଇଁ ମୋ ଛାତି ଭିତରେ ଅନେକ ଝଡ଼ ମା', ଏଇ ମଦ ପିଇ ସବୁ ଭୁଲିଯିବାକୁ ଚାହେଁ ।

ଲିସା—ଯାହାହଉ ତମେ ତ ମଦପିଇ ସବୁ ଭୁଲିଯାଇପାରୁଚ; ମୁଁ କିନ୍ତୁ ପାରୁନି ଅଙ୍କଲ୍ ।

ୱଇଲିୟମ୍—କ'ଣ ଭୁଲିପାରୁନୁ ମା' ? କ'ଣ ତୋର ଦୁଃଖ ? କାହାପାଇଁ ତୋର ଅଭାବ ?

ଲିସା—କୁହନ୍ତୁ ଅଙ୍କଲ୍, ଭଲପାଇବା କ'ଣ ଭୁଲ ? ଭଲପାଇବା କ'ଣ ଅପରାଧ ?

ୱଇଲିୟମ୍—ଭଲ ପାଇବା ? କିଏ କହୁଚି ଭଲପାଇବା ଭୁଲ । କିଏ କହୁଚି ତୁ ଭୁଲକରଚୁ ? ବାଇବେଲର ପୃଷ୍ଠା ଖୋଲି ଦେଖ୍ ମା'; ଭଲ ପାଇବା ପାପ ନୁହେଁ, ପ୍ରେମ ଅନ୍ୟାୟ ନୁହେଁ, ବ୍ୟଭିଚାର ନୁହେଁ । ପ୍ରେମ ପବିତ୍ର, ପ୍ରେମ ସ୍ୱର୍ଗୀୟ ।

ଲିସା—ଅଙ୍କଲ୍ !

ୱଇଲିୟମ୍—ହଁ, ମା, ମାଟି ଗୋଡ଼ର ଏଇ ଦୁନିଆ ସ୍ୱର୍ଗ ହୋଇଉଠେ, ଟଙ୍କାପଇସା, କୋଠାବାଡ଼ି ନେଇ ନୁହେଁ ମା', ମାୟାମମତା, ସ୍ନେହ, ପ୍ରେମ ଆଉ ଭଲ ଭଲପାଇବା ନେଇ । (ପିଠିରେ ଥାପୁଡ଼ାଇ) ତୁ ମିଛଟାରେ ହାରଯାଉଚୁ ମା, ଯିଏ ଡରେ, ଏ ଦୁନିଆ ତାକୁ ବେଶି ଡରାଏ । ଯିଏ ନଇଁଯାଏ, ଦୁନିଆ ତାକୁ ବେଶି ନୁଆଇଁଦିଏ । ତୁ ନଇଁଯାଆନି ମା' ମୋତେ କହ ମା' କାହାକୁ ତୁ ଭଲପାଉ ? ଥରେ ଖୋଲିକରି କହ ।

ଲିସା—(ଅଶ୍ରୁଜଡ଼ିତ କଣ୍ଠରେ) ଅଙ୍କଲ୍ ।

ୱଇଲିୟମ୍—କାନ୍ଦନା ମା', ତୁ ଶକ୍ତହ' । Be straight.

ଲିସା—ଶକ୍ତି ହେବ ? କାହାପାଇଁ ଶକ୍ତି ହେବ ? କାହାପାଇଁ ମୁଁ ବଞ୍ଚିବ ? କାନ୍ଦିକାନ୍ଦି ଏଇ ଦୁନିଆକୁ ଭସେଇ ଦେଲେ ବି ସିଏ ତ ଆଉ ଫେରିଆସିବନି ।

ଉଇଲସ୍ମନ୍—ସିଏ ? କିଏ ସେ, ଖୋଲିକରି କହ ମା' ?

ଲିସା—ସେଇ ଝଡ଼ ରାତିରେ ଯାହାକୁ ଆପଣ ବାହାର କରିଦେଲେ···

ଉଇଲସ୍ମନ୍—ଓ, ତୁଷାର ? ତୁ ତାକୁ ଭଲପାଉ ମା' ?

ଉଇଲସ୍ମନ୍—ତୁ ତାକୁ ଭଲପାଉ ମା' ? ଏଇକଥା ସେଦିନ କହିଲୁନାହିଁ କାହିଁକି ? ମୁହଁ ଫିଟାଇ କାହିଁକି କହିଲୁନାହିଁ ମା ? ଛିଃ-ଛିଃ ତାକୁ କି ଦୟନୀୟ ଭାବରେ ମୁଁ ତଡ଼ିଦେଲି । ଓ, Lord, ମୋ ପାପର କ୍ଷମା ନାହିଁ ।

ଲିସା—ନା ଅଙ୍କଲ୍, ସବୁ ଦୋଷ ତ ମୋର ।

ଉଇଲସ୍ମନ—ନା, ଯେମିତି ଭାବରେ ସେଦିନ ସେ ଯାଇଛନ୍ତି କୌଣସି ଶ୍ୱାନପଶୁକୁ ବି ମଣିଷ ଏମିତି ବାହାର କରିଦିଏନା । ସେ ଗୋଟାଏ କାଳରାତ୍ରି !! ଏଡ୍‌ୱାର୍ଡ ମୋତେ ବେଶିଗୁଡ଼ାଏ ମଦ ପିଆଇ ମାତାଲ କରିଦେଲା, ତୋ ଡ୍ୟାଡ଼ି ଏସ୍କୁଟେଶ୍ କହି ମୋ ମୁଣ୍ଡଟାକୁ ଗରମ କରିଦେଲା—ମୁଁ ଗୋଟାଏ ହିଂସ୍ର ଜାନୁଆର ଭଳି କିଛି ନ ବୁଝି ତାକୁ ବାହାର କରିଦେଲି । ସେ ବରଫ ଝଡ଼ରାତିରେ ସେମିତି ଭାବରେ ଗଲାଗଲା କ'ଣ କହିବ ମା' ? ସେ ଗଲାପରେ ଦେଖିଲି ତୋ ଆଖିରେ ଲୁହ, ବୁଝିପାରିଲିନି କାହିଁକି ତୁ କାନ୍ଦୁଚୁ । ଆଜି ବୁଝୁଚି, ହେଲେ କଥାଦଉଚି ମା' ମୁଁ ତାକୁ ଖୋଜି ବାହାର କରିବି । ମୁଁ ତାକୁ ଫେରେଇ ଆଣିବି ।

ଲିସା—ନା, ଅଙ୍କଲ୍ । କାହିଁକି ଆଉ ଖୋଜିବେ ? ସେ କ'ଣ ଆଉ ଆସିବେ । ନା, ଆଦୌ ନୁହେଁ । ତା'ଛଡ଼ା ମୁଁ ତ ପଥର ଘରେ, ଚିରଦିନ ବନ୍ଦୀ । ମୋପାଇଁ ସୂର୍ଯ୍ୟାଲୋକର ମୂଲ୍ୟ କ'ଣ ?

ଉଇଲସ୍ମନ୍—ନା, ମୋ ପଥର ଘରକୁ ମୋତେ ଭାଙ୍ଗିଦବାକୁ ପଡ଼ିବ । ଅବରୁଦ୍ଧ ପଞ୍ଜୁରୀର ବରଫ ଶୀତଳତା ତୋର ଭେଣାଗୁଡ଼ିକୁ ଜଡ଼ କରିଦେଇଛି ।

ତା'ଭିତରେ ମୁଁ ଭଗଦେବ ନୀଳ ଆକାଶର ସ୍ପର୍ଶ । ଦକ୍ଷିଣାବାୟୁର ଉଷ୍ଣତା ।

ଲିସା—ଅଙ୍କଲ୍ ।

ଉଇଲସ୍‌ନ୍‌—ହଁ ମା', ତୁ ପୁଣି ଉଡ଼ିପାରିବୁ । ଅନୁଭବ କରିବୁ ଖୋଲା ଆକାଶ, ମୁକ୍ତ ପବନର ସ୍ୱାଦ । ମୋ ଉପରେ ବିଶ୍ୱାସ ରଖ୍ ମା, ନା better you rely on God, the Almighty ହଁ, ତାଙ୍କର ଉପରେ ଭରସାରଖ ମା' । ତାଙ୍କର ଉପରେ ଭରସାରଖ । ତାଙ୍କୁଇ ଡାକ ମା' ! ଦୁର୍ଦ୍ଦିନର ଏଇ ଅନ୍ଧାର ଭିତରେ ତୁ ତାଙ୍କର ଆରାଧନା କର । Oh God, lead kindly light, amid the encircling gloom.

[ ପ୍ରଭୁ ଯିଶୁଙ୍କ ପ୍ରତିମା ନିକଟରେ ନତଜାନୁ ହୋଇ ଆରାଧନା କଲାବେଳେ ମଞ୍ଚ ଅନ୍ଧକାର ହେଲା । ଲିସା ଆଖିରୁ ଲୁହଧାର ବହିଆସି ତା'ର ଗଣ୍ଡଦେଶକୁ ଅଶ୍ରୁସିକ୍ତ କରିଦେଲା । ]



## ଦ୍ୱିତୀୟ ଦୃଶ୍ୟ

[ ହୋଟେଲ ଏଭରେଷ୍ଟର ଲନ୍ । ଖଣ୍ଡେ garden ଚେୟାର ଓ ଗୋଟିଏ ଟି'ପୟ ଥୁଆହୋଇଛି । ଟି'ପୟ ଉପରେ କେତେଖଣ୍ଡ magazine ଓ ସମ୍ବାଦପତ୍ର । ଚିନ୍ତିତ ମନରେ ଟି'ପୟ ଉପରେ ବସିଥିଲେ ହୋଟେଲ ମ୍ୟାନେଜର ମିସେସ୍ ଖାନ୍ । କିଛି ସମୟ ପରେ ଆସିଚି ତୁଷାର । ସେମିଜାଣ୍ଟି ଦେହରେ ତା'ର ଟ୍ରାଉଜର, ପଞ୍ଜାବି ଓ ଖଣ୍ଡେ ଶାଲ୍ । ]

ତୁଷାର—ମତେ ଡକାଇଥିଲେ ମିସେସ୍ ଖାନ୍ ?

ମିସେସ୍ ଖାନ୍—ହଁ, ମୁଁ ଆପଣଙ୍କୁ ଅପେକ୍ଷା କରିଚି । ଆପଣଙ୍କ ଚେକ୍‌ଟା encash କରି, ଟଙ୍କା ପଠାଇଥିଲି, ଆପଣ ଫେରାଇଦେଲେ ଯେ !

ତୁଷାର—ହଁ, ଦେଖିଲି ମୋର ପ୍ରାପ୍ୟରୁ ଦେଢ଼ଶହ ଟଙ୍କା କମ୍ ଅଛି । ସେଇଥିପାଇଁ ଫେରେଇଦେଲି ।

ମିସେସ୍ ଖାନ୍—ଦେଖନ୍ତୁ ତୁଷାର ବାବୁ, ଆପଣ ଏଠି ନୂଆଲୋକ । ଏଠାକାର business ବିଷୟରେ ଆପଣଙ୍କର କିଛି ଧାରଣା ନାହିଁ । ଏମିତି ସବୁ paymentରେ ଯଦି କିଛି କମ୍‌ଥାଏ ସେଥିରେ mind କରିବା କଥା ନୁହେଁ ।

ତୁଷାର—ବୁଝିପାରିଲି ନାହିଁ ମିସେସ୍ ଖାନ୍, ଆପଣ କ'ଣ କରିବାକୁ ଚାହାଁନ୍ତି ।

ମିସେସ୍ ଖାନ୍—ସବୁ ଜାଣିଶୁଣି କିଛି ନ ଜାଣିବାର ଅଭିନୟ କରୁଛନ୍ତି କାହିଁକି ତୁଷାର ବାବୁ । This is in mutual interest. ଆମେ

ସମ୍ପ୍ରୁଙ୍କଠାରୁ କମିଶନ ପାଉଁ । ଆପଣଙ୍କର କେତେ ହଜାର ଟଙ୍କାର ବିଲ୍‌ରୁ ମୋଟ ଦେଡ଼ଶହ ଟଙ୍କାର କମିଶନ କାଟିନିଆଯାଇଛି ।

ତୁଷାର—କ୍ଷମା କରିବେ ମିସେସ୍ ଖାନ୍ । ମୁଁ ଏ ପ୍ରକାର businessରେ ଅଭ୍ୟସ୍ତ ନୁହେଁ । ମୋର ଝାଳବୁହା ଶ୍ରମର ପ୍ରାପ୍ୟରୁ ଆପଣ କମିଶନ ଦାବୀ କରିବେ, ଏଇଟା ଅନ୍ୟାୟ ।

ମିସେସ୍ ଖାନ୍—ଅନ୍ୟାୟ ? ଆପଣ ଏଠି ନୂଆଲୋକ । ଆପଣଙ୍କୁ ଏଠିଆଣି ଏତେବଡ଼ ହୋଟେଲରେ ଗୃହସ ଦେଲା କିଏ ? ଆଜି ସାରା ସହରରେ ଆପଣଙ୍କର ସୁନାମ । ଏଥିପାଇଁ କ'ଣ ମୁଁ ଦାୟୀ ନୁହେଁ ।

ତୁଷାର—ଆପଣ ମୋତେ ଯେଉଁ ସୁଯୋଗ ଦେଇଛନ୍ତି, ସେଥିପାଇଁ ମୁଁ କୃତଜ୍ଞ; କିନ୍ତୁ ତା'ର ଅର୍ଥ ନୁହେଁ ଯେ, ଆପଣ ମୋତେ exploit କରିବେ ।

ମିସେସ୍ ଖାନ୍—Exploit ? କିଏ ଆପଣଙ୍କୁ exploit କଲା ? ଆପଣ ସାମାନ୍ୟ ଦେଡ଼ଶହ ଟଙ୍କାପାଇଁ କଳି କରିବାକୁ ଚାହାନ୍ତି ।

ତୁଷାର—ପ୍ରଥମ ତିନିମାସ ସପ୍ତାହକେ ୫୦ ଟଙ୍କା ମୋତେ ଦେଇ, ଆପଣ ମୋ'ର ନାଁରେ propreitorଙ୍କଠାରୁ ବିଲ୍‌କରି ନେଇଛନ୍ତି, ଶହଶହ ଟଙ୍କା ମାସମାସଧରି ନିର୍ବୋଧ ଭଳି ମୁଁ contract ସାଇନ୍ କରିଛି, ଆଉ ତା'ର ଫାଇଦା ଉଠେଇଚନ୍ତି ଆପଣ ।

ମିସେସ୍ ଖାନ୍—ଦେଖନ୍ତୁ, ଆପଣଙ୍କୁ ଏଠି ଗୃହସ ଦେଇ ମୁଁ ଭୁଲକରିଚି ।

ତୁଷାର—କାହିଁକି ? ଆପଣଙ୍କର ତ କିଛି କ୍ଷତି ହୋଇନି । ଆପଣଙ୍କର ହୋଟେଲର କିଛି loss ହୋଇନି । ଆପଣଙ୍କର sale ବଢ଼ିଛି । ଆପଣ ପାଇଛନ୍ତି ମୋଟା ବୋନସ୍ । ତା'ପରେ ବି ଆପଣ ମୋର ହକ୍ ପାଉଣାରୁ କମିଶନ ନବାକୁ ଚାହାନ୍ତି ? I am the last man to tolerate it.

ମିସେସ୍ ଖାନ୍—ଥାଉ, ଥାଉ, ଥାଉ କିଛି କହିବା ପୂର୍ବରୁ ଆପଣ ଏଠୁ ବିଦାୟ ହୋଇଯାଆନ୍ତୁ ।

ତୁଷାର—ତା'ହେଲେ ଦେଖୁଚ ବାଧହୋଇ ମୋତେ ହୋଟେଲ ମାଲିକଙ୍କୁ ଦେଖାକରିବାକୁ ହେବ ।

ମିସେସ୍ ଖାନ୍—I say don't dare it. ହୋଟେଲ ବ୍ୟବସାୟର କେବଳ ବାହାରଟା ଆପଣ ଦେଖିଛନ୍ତି । ଭିତରଟା ଜାଣିନାହାନ୍ତି; ଭିତରଟା ଦେଖିବାକୁ ଆପଣ ଚେଷ୍ଟା କରନ୍ତୁ ନାହିଁ ।

ତୁଷାର—ଆପଣ ମୋତେ ଧମକ୍ ଦେଉଛନ୍ତି ?

ମିସେସ୍ ଖାନ୍—ହଁ, ସେଇଟା କେବଳ କଥାରେ ନୁହେଁ କାମରେ ଦେଖେଇ ଦବାକୁ ବି ରାଜିଅଛି; କିନ୍ତୁ ମୁଁ ତା'କରିବାକୁ ଯାଉନି; କାରଣ ମୁଁ ଜାଣେ, ଆପଣଙ୍କର ଏଠି କେହି ନାହାନ୍ତି । You are helpless.

[ଏହି ସମୟରେ ବାହାରୁ ଆସିଚନ୍ତି ଉଇଲସ୍ନମ୍]

ଉଇଲସ୍ନମ୍—ଦୁନିଆରେ ଯାହାର କେହି ନାହାନ୍ତି; ତା'ପାଇଁ ଜଣେ ଅଛି । And he is the Almighty.

ମିସେସ୍ ଖାନ୍—(ବିରକ୍ତ ହୋଇ) ଆପଣ କିଏ ?

ଉଇଲସ୍ନମ୍—ମୁଁ ଯିଏ ହୁଏନା କାହିଁକି, ତୁଷାର ବାବୁଙ୍କୁ ଆପଣ ପୂର୍ବ payment ଟା ଦେଇଦିଅନ୍ତୁ । କ'ଣ ଦଉଚନ୍ତି ନା ନାହିଁ ?

ମିସେସ୍ ଖାନ୍—Allright ଦେଇଦଉଚି ।

[ପକେଟରୁ କାଢ଼ି ଦେଢ଼ଶ' ଟଙ୍କା ଦେଇଦେଲେ ଓ ଭିତରକୁ ଚାଲିଗଲେ ।]

ତୁଷାର—ମୁଁ ତ ଆପଣଙ୍କୁ ଡାକିନି । ଆପଣ କାହିଁକି ଉପରେପଡ଼ି ମୋତେ ସାହାଯ୍ୟ କରିବାକୁ ଆସିଛନ୍ତି ?

ଉଇଲସ୍ନମ୍—ମୁଁ ଆସିଚି ମୋ କର୍ତ୍ତବ୍ୟ କରିବାକୁ, ମୋ ପାପର ପ୍ରାୟଶ୍ଚିତ୍ତ କରିବାକୁ । ଶିଳ୍ପୀ ତୁଷାରପାଇଁ ନୁହେଁ; ଜଣେ ମଣିଷପାଇଁ ।

ତୁଷାର—ମଣିଷପାଇଁ ? ଆପଣ କ'ଣ କେବେ ମୋତେ ମଣିଷ ବୋଲି ଭାବିଛନ୍ତି ?

ଉଇଲସ୍ନମ୍—ଜାଣେ ତୁଷାର, ତମେ ମୋତେ ଭୁଲ ବୁଝିବ । ଆଉଯାଏ ମୋତେ କେହି ବୁଝିନାହାନ୍ତି । ତମେ ବି ସେଥିରୁ ବାଦ୍‌ଯିବ କିପରି ?

ତୁଷାର—ମୁଁ ବୁଝିଛି । ଆପଣଙ୍କ ଚର୍ଚ୍ଚିତ ମୁଁ ସେଇ ବରଫ ଝଡ଼ ରାତରେ । ଭାବିପାରେନା, ମଣିଷ ଏତେ ନିର୍ଦ୍ଦୟ ହୋଇପାରେ କେମିତି ? ଏତେ ପଶୁ ହୋଇପାରେ କେମିତି ?

ଉଇଲସୃମ୍—ହଁ, ମୁଁ ପଶୁ । ଯାହାର ବଞ୍ଚିବା ନିର୍ଭର କରେ କେଇ ବୋତଲ ମଦ ଉପରେ, ସେ ପଶୁ ନୁହେଁ ତ ଆଉ କ'ଣ ? କିନ୍ତୁ ସେତିକି ମୋର ସବୁ ପରିଚୟ ନୁହେଁ ତୁଷାର ?

ତୁଷାର—ମୋ ଜୀବନରେ ଆପଣଙ୍କର ପରିଚୟର ଭୂମିକା ଆଉ ଦରକାର ପଡ଼ିବନାହିଁ । ଖାଲି ଆପଣଙ୍କର ନୁହେଁ, ସେଇଦିନ ସେ ଘରର ସମସ୍ତଙ୍କ ସାଥିରୁ ମୋର ସମ୍ପର୍କ ତୁଟିଯାଇଛି ।

ଉଇଲସୃମ୍—ସେଦିନ ସେଇ ଝଡ଼ ଅନ୍ଧାର ରାତିରେ ତମକୁ ବାହାର କରିଦେଲି ପରେ ମୁଁ ଦେଖିଲି ଲିସା ଆଖିରେ ଲୁହ । ସେଇ ଲୁହରେ ମୁଁ ଦେଖିପାରିଲି ତମର ପ୍ରତିଛବି, ବୁଝିପାରିଲି ମୋର ଭୁଲ । ସେଇ ଭୁଲର ପ୍ରାୟଶ୍ଚିତ୍ତ କରିବାକୁ, ଦିନରାତି ତମକୁ ହୋଟେଲରେ ଖୋଜିବୁଲିଛି । ଆଜି ତମ ସାମ୍ନାରେ ଦେଖାହେବା ପ୍ରଭୁଙ୍କର ଇଚ୍ଛା । ତମକୁ କ୍ଷମାମାଗୁଛି । ତମେ ଫେରିଚାଲ ତୁଷାର, ତମେ ଫେରିଚାଲ ।

ତୁଷାର—କୋଉ ମୁହଁରେ ଆପଣ ମୋତେ ଡାକୁଛନ୍ତି ? କ'ଣ ଭାବୁଛନ୍ତି ଆପଣ ? ଆପଣଙ୍କର ବ୍ୟବହାର ମୋତେ ଗୋଟାଏ କଥା ଶିଖେଇଛି । ସେ ହେଉଛି—ଦୁନିଆରେ ସ୍ନେହ, ମମତାବୋଲି କିଛି ନାହିଁ । ଜୀବନରେ ବଡ଼ ଖାଲି ଟଙ୍କା । ହଁ ଗାଡ଼ି, ମୋଟର, ବ୍ୟାଙ୍କ ବାଲାନ୍ସ ।

ଉଇଲିସୃମ୍—(ଅନୁନୟ କରି) ତମର ଅଭିମାନର ବରଫ ପାହାଡ଼ କ'ଣ ତରଳିବନାହିଁ ତୁଷାର ? ଲିସାର ଆଖି ଲୁହରେ ତମର ଯୋଉ ଛବି ମୁଁ ଦେଖିଛି ସେ କ'ଣ ତା'ହେଲେ ମିଛ ? କୁହ ତୁଷାର କୁହ ।

ତୁଷାର—ନା, ଲିସା ମୋର କେହି ନୁହେଁ । ତା'ସାଙ୍ଗରେ ମୋର କିଛି ସମ୍ପର୍କ ନାହିଁ । No, never. ମୋତେ କ୍ଷମାକରନ୍ତୁ ମୁଁ ଆଉ ସେଠିକି ଫେରଯାଇ ପାରିବ ନାହିଁ । [ଗୃଲଗଳ ଭିତରକୁ]

ଉଇଲ୍‌ସନ୍—ତୁଷାର, ତୁଷାର ! ମୋ କଥା ଶୁଣ ତୁଷାର । ତମ ଦେଖାପାଇଲି କିନ୍ତୁ ତମକୁ ପାଇଲି ନାହିଁ ଏଇ ମୋର ଦୁର୍ଭାଗ୍ୟ ।



## ତୃତୀୟ ଦୃଶ୍ୟ

[ ଯାଚକଙ୍କ guest houseର ସେଇ Drawing room, ସାଜସଜ୍ଜା ପୂର୍ବପରି । ସମୟ ସକାଳ ଆଠଟା । ବାହାରୁ ଶଙ୍କିତ ପଦକ୍ଷେପରେ ଆସିଛି ସରୋଜ । ସ୍କ୍ରିନ୍‌ଆଡ଼କୁ ଚାହିଁ, ଦେଖିଛି ଲିସା ଏକୁଟିଆ ବସି ଖବର କାଗଜ ଖେଳାଉଛି । ଧୀର ପଦକ୍ଷେପରେ ଲିସା ପାଖକୁ ଯାଇ ଡାକୁଛି । ]

ସରୋଜ—ଲିସା ସିଷ୍ଟର, ଲିସା ସିଷ୍ଟର ।

ଲିସା—(ମୁହଁ ଫେରାଇ) କ'ଣ ହେଇଛି ସରୋଜ ଭାଇ ?

ସରୋଜ—ଶୁଭ ଖବର ନେଇଆସିଛି ।

ଲିସା—ମୋ ଜୀବନରେ 'ଶୁଭ' ବୋଲି କିଛି ନାହିଁ; ସରୋଜ ଭାଇ ।

ସରୋଜ—ବିଶ୍ୱାସ ହଉନି ? (ପକେଟରୁ ଗୋଟିଏ regd. letter କାଢ଼ି) ଏଇ ଦେଖ୍ ।

ଲିସା—ଦେଖି, ଦେଖି ।

ସରୋଜ—(ଚିଠିଟି ପକେଟରୁ କାଢ଼ି ଲୁଚାଇଦେଇ) ଉହୁଁ ସେମିତି ନୁହେଁ । ଆଗ କହ, କ'ଣ ମତେ ଦବୁ ?

ଲିସା—ତମପାଇଁ ଗୋଟିଏ ନୂଆ ସ୍ୱେଟର ବୁଣିଦେବି ।

ସରୋଜ—କିନ୍ତୁ ବୁଣିସାରିଲା ବେଳକୁ ଦେଖିବୁ ତୋ ଡ୍ୟାଡ଼ି ସେଇଟା ଆଉ କାହାକୁ ବକିବାପାଇଁ ଆଡଭାନ୍ସ ନେଇସାରିଚନ୍ତି ।

ଲିସା—ଆଚ୍ଛା, ତମେ ତ ଖାଇବାକୁ ଖୁବ୍ ଭଲପାଅ, ତମକୁ ଗୋଟାଏ special pudding କରି ଖୁଆଇବି ।

ସନ୍ତୋଷ—ଖାଇ ସାରିଲା ପରେ ତୋ daddy ବି ସେ ଟିଏ special bill ଧରାଇଦେଇ କହିବେ pay it just now.

ଲିସା—(ନିରୁପାୟ ହୋଇ) ଆଉ ତୁମକୁ କ'ଣ ଦେବି ଭାବିପାରୁନି ।

ସନ୍ତୋଷ—ଆଉ କିଛି ଦେବା ଦରକାର ନାହିଁ । ମୁଁ ଜାଣେ ତୁ କିଛି ଦେଇପାରିବୁ ନାହିଁ । ନେ ତେ ଚିଠିପତ୍ରି ଦେଖ୍, ତୋର ଚାକିରି ହୋଇଯାଇଛି ।

[ଲିସା ହାତକୁ ଚିଠିଟି ବଢ଼ାଇଦେଇଛି]

ଲିସା—(ଚିଠିପଢ଼ି) ତମକୁ many many thanks.

ସନ୍ତୋଷ—ଧନ୍ୟବାଦ୍ ଦରକାର ନାହିଁ ? ତୁ କହ ତ କେବେଯାଇଁ join କରିବୁ ।

ଲିସା—ମୋର ମନେହଉଚ ସାଙ୍ଗେସାଙ୍ଗେ ଚାଲିଯିବି ।

[ବାହାରୁ ଆସିଲେ ରାଜୀବ ଓ ହରପ୍ରୀତ]

ହରପ୍ରୀତ—କୁଆଡ଼େ ଯିବାର ପ୍ରୋଗ୍ରାମ କରୁଚନ୍ତି, ଲିସ sister ?

ଲିସା—କଟକ ।

ହରପ୍ରୀତ—କ'ଣ ପାଇଁ ?

ରାଜୀବ—(କିଛି ବୁଝି ନ ପାରି) କାହା ଉପରେ ରାଗିକରି ଯିବ ଲିସା sister ?

ଲିସା—ରାଗିକରି ଯିଏ ଯାଏ ସିଏ କ'ଣ କହିକରି ଯାଏ ?

ସନ୍ତୋଷ—ଲିସା sisterର ଚାକିରି ହୋଇଯାଇଛି । କଟକ ରେଡ଼ିଓ ଷ୍ଟେସନର ଏନାଉନ୍‌ସର ।

ହରପ୍ରୀତ<br>ରାଜୀବ } —Wonderful. Congratulation ଲିସା sister.

ଲିସା—Thanks, many thanks, ସବୁତକ credit କିନ୍ତୁ ସନ୍ତୋଷ ଭାଇଙ୍କର । ଚାକିରିଟା ହୋଇପାରିଛି ତାଙ୍କର ଯୋଗାଡ଼ରେ ।

ସରୋଜ—ଚଇ ଫାଲ୍‌ତୁ ଲୋକ ବୋଇଟାଙ୍କୁ କହି ଲାଭ କ'ଣ ?

ହରଦୀପ—ହଁ ଫାଲତୁ ଲୋକ; କିନ୍ତୁ ଖାଇବାକୁ ଦେବାବେଳକୁ ନୁହେଁ । କେବେ ଖାଇବାକୁ ଦେବ କୁହ ଲିସା sister ?

ଲିସା—ଏବେ ମୁଁ କାହାକୁ କିଛି ଦେଇପାରିବ ନାହିଁ ।

ରାଜୀବ—ତା'ହେଲେ କେବେ ?

ଲିସା—ପ୍ରଥମ ମାସର ଦରମାଟା ପାଇଲେ ।

ହରଦୀପ—ତା'ମାନେ ? ଏଠୁ ଯିବ । Join କରିବ । ତା'ପରେ ଗୋଟାଏ ମାସ ! My god. ଆଚ୍ଛା, କେବେ ଯାଉଚ ?

ଲିସା—ପନ୍ଦର ଦିନ ଭିତରେ join କରିବାକୁ ଲେଟା ହୋଇଚି ।

ରାଜୀବ—ତା'ହେଲେ ସ୍ଵା'ର ଭିତରେ ସବୁ ଠିକ୍‌ଠାକ୍ କରିବାକୁ ହେବ ।

ସରୋଜ—ଠିକ୍‌ଠାକ୍ କ'ଣ ? କୋଉ ଏବେ ଦୂରଦେଶକୁ ଯିବ ଯେ ? ଦାର୍ଜିଲିଂରୁ କଟକ—ପାହାଡ଼ ଉପରୁ ପାହାଡ଼ ତଳକୁ ।

ଲିସା—ରାଜୀବ ଭାଇ ଠିକ୍ କହୁଛନ୍ତି । ମୁଁ ତ ଯିବ ପାଇଁ କିଛି ବ୍ୟବସ୍ଥା କରିନ । ବାହାରୁ ଯିବା କଥାନେଇ ମୋର କିଛି idea ନାହିଁ । କ'ଣକ'ଣ ନବାକୁ ହୁଏ ବି ମୋତେ ଜଣାନାହିଁ ।

ରାଜୀବ—କିଛି ବ୍ୟସ୍ତ ହେବା ଦରକାରନାହିଁ । ମୁଁ ଗୋଟିଏ ଲିଷ୍ଟ କରିଦେବି । ମାର୍କେଟ ଯାଇ ଯାହା ଦରକାର ସବୁ କିଣିଆଣିବ ।

ହରଦୀପ—ତମର ମାର୍କେଟ ଯିବା ବି ଦରକାରନାହିଁ । ଲିଷ୍ଟଟା ମତେ ଦିଅ, ମୁଁ ନିଜେ ଯାଇଁ ସବୁ କିଣିଆଣିବି ।

ରାଜୀବ—ହଁ, Lisa sister, ଟ୍ରେନ୍‌ରେ ରିଜର୍ଭେସନ କଥାଟା ମନେରଖିଥାଅ ।

ସରୋଜ—ସେଇଟା ଆଉ କଷ୍ଟ କ'ଣ ? ଚେଷ୍ଟାକଲେ ମିଳିଯିବ । ମୁଁ ନିଜେ ଯାଇଁ ସେଇଟା କରେଇଦେବି ।

ସରୋଜ—ଲିସା, ତୋତେ ସାହାଯ୍ୟ କରିବାକୁ ସମସ୍ତେ ଯେମିତି ବାହାରିଚନ୍ତି ଦେଖିଲେ ମୋର ଈର୍ଷା ହଉଚ ।

ଲିସା—(ହସିହସି) ଈର୍ଷା କାହିଁକି ସରୋଜ ଭାଇ ? ମୁଁ ତ ତମମାନଙ୍କର ଗ୍ରେଟ ଭଉଣୀଟିଏ । ମୋ ତରଫରୁ ଆଜି ସମସ୍ତଙ୍କୁ ଧନ୍ୟବାଦ ଜଣେଇବା କଥା ।

ସରୋଜ—ନା, କାହାରକୁ ଧନ୍ୟବାଦ ଜଣେଇବା ଦରକାର ନାହିଁ । ଆମେ ଖୁସିହଉ ସେଇଦିନ ଯୋଉଦିନ ଏଇ ରେଡ଼ିଓରେ ଭାସିଆସିବ— ଆକାଶବାଣୀ କଟକ । ଆଞ୍ଚଳିକ ସମ୍ବାଦ ପଢ଼ୁଛନ୍ତି ଲିସା ଯାଚକ । ମେଡ଼ିକାଲ କଲେଜର ହାଉସ୍ ଷ୍ଟାଫ୍ ଏସୋସିଏସନ ତରଫରୁ ନାଟକ "ମୋନାଲିସାର ହସ" ମଞ୍ଚସ୍ଥ ହେଉଚ ମେଡ଼ିକାଲ ରଙ୍ଗମଞ୍ଚରେ । ଏଇ ନାଟକ ଦେଖିବାକୁ ଭୀଷଣ ଭିଡ଼ ହେଉଛି । ସମସ୍ତଙ୍କୁ ବିଶେଷ ଅନୁରୋଧ ଯେ, ଅଗ୍ରିମ୍ ଟିକେଟ କିଣି ନାଟକ ଦେଖିବେ । ପାଶ୍, କନ୍‌ସେସନ କିଛି ନାହିଁ । S. S. G. fundକୁ ଟଙ୍କାଟା ଦେଲେ କାହାର କିଛି କ୍ଷତି ହବନାହିଁ । [ସମସ୍ତେ ହସିଉଠଲେ]

ହରପ୍ରୀତ ଓ ସୁଜୀବ }—Lucky, କଟକରେ ରହିଲେ ଲିସା sister ସାଥିରେ ସବୁବେଳେ ଦେଖାହଉଥିବ ।

ସରୋଜ—ହଁ, ଠିକ୍ କଥା ।

[ ଏଇ କୋଳାହଳ ଓ ଆନନ୍ଦ ହଠାତ୍ ବନ୍ଦ ହୋଇଗଲା । ପ୍ରବେଶ କରିଛନ୍ତି ଯାଚକ । ]

ଯାଚକ—(ରାଗରେ) ଏସବୁ କ'ଣ ଚାଲିଚ ଏଠି ? ଲିସା, ତୁ ବି ଏମାନଙ୍କ ସାଥିରେ ??? ଛିଃ-ଛିଃ ଲାଜଲାଗୁନି ?

[ସମସ୍ତେ ଭୟରେ ମୁହଁ ତଳକୁ କରିଛନ୍ତି]

ହରପ୍ରୀତ—ତାଙ୍କୁ କିଛି କୁହନ୍ତୁନାହିଁ daddy, ତାଙ୍କର ଗୋଟାଏ ଖୁସିଖବର ପାଇ, ଆମେ ସମସ୍ତେ ଟିକିଏ joke କରୁଥିଲୁ ।

ଯାଚକ—କି ଖବର ? ମୁଁ ଆଗେ ଶୁଣେ ।

ସରୋଜ—ଲିସା sisterଙ୍କର ଗୋଟାଏ ଭଲ ଚାକିରି ହୋଇଯାଇଛି ।

ଯାଚକ—ଚାକିରି ? ମୋ ଝିଅ ଚାକିରି କରିବ ? What a funny idea ? କିଏ ତା'ମୁଣ୍ଡରେ ଏସବୁ କଥା ପୂରେଇଲା ?

ହରଦୀପ—ଆଜିକାଲି ଝିଅମାନେ ତ ବହୁତ ଚାକିରି କରୁଛନ୍ତି daddy.

ରାଜୀବ—ସେଥିରେ କ୍ଷତି କ'ଣ ?

ଯାଚକ—ଚୁପ୍‌କର । ମୁଁ ତମମାନଙ୍କୁ ପଚାରୁନାହିଁ ।

[ରାଜୀବ ଓ ହରଦୀପ ଚୁପ୍‌ହୋଇ ଛିଡ଼ା ହୋଇଗଲେ]

ମୁଁ ଠିକ୍ ବୁଝିପାରୁଛି ଏସବୁ ତମରିମାନଙ୍କ କାମ । ନଚେତ୍ ଲିସା କାହିଁକି ଚାକିରି କଥା ଚିନ୍ତାକରନ୍ତା ?

ସରୋଜ—ମୁଁ ତ ପ୍ରଥମରୁ ମନାକରୁଥିଲି । Lisa ବାରମ୍ବାର କହିଲାରୁ ମୁଁ application ଲେଖି ପଠାଇଲି ।

ଯାଚକ—Shut up. I don't want to hear anything from you. ମୋ ଝିଅ କେବେ ଚାକିରି କଥା ଭାବିପାରେନା । ତା'ର ଅଭାବ କ'ଣ ? ସିଏ ଯିବ ଚାକିରି କରିବାକୁ ? ଯାଅ, ଚାଲିଯାଅ ସମସ୍ତେ । Leave her alone. ଲିସା, ତୁ ଭିତରକୁ ଆ' ।

[ଯାଚକଙ୍କ ପଛେପଛେ ଲିସା ଭିତରକୁ ଚାଲିଯାଉଛି]

[ସମସ୍ତେ ମୂକହୋଇ ଛିଡ଼ାହୋଇଥିବାବେଳେ ପ୍ରବେଶ କରିଛନ୍ତି ଉଇଲିୟମ୍ । ]

ଉଇଲିୟମ୍—କ'ଣ ହୋଇଛି ? ତମେମାନେ ସମସ୍ତେ ଏମିତି ମୂକହୋଇ ବସିଛ କାହିଁକି ? I am sure କିଛି ଗୋଟାଏ ହୋଇଛି, କ'ଣ ମୋତେ ଟିକିଏ କୁହ ।

ରାଜୀବ—କିଛି ହେଉନି ଅଙ୍କଲ୍ । ଲିସା sister କେତେଦିନ ଇମିତି ଯନ୍ତ୍ରଣାରେ ବୁଡ଼ିଥିବ ?

ଉଇଲିୟମ୍—ଯେତେଦିନ ସେ ଇମିତି ନଷ୍ଟାମି ମେଣ୍ଟାଳୁଥିବ ।

ରାଜୀବ—ତାଙ୍କ ପ୍ରତି ଆପଣଙ୍କର ଦୟା ହୁଏନା ଅଙ୍କଲ୍ ?

ଉଇଲିୟମ୍—ନା, ହୁଏନା । She is destined to suffer. ଏମିତି ଭୋଗିବାପାଇଁ ସିଏ ଜନ୍ମହୋଇଚି ।

ସରୋଜ—ଆପଣ ଚାହିଁଲେ ତାଙ୍କ ଅବସ୍ଥା ବଦଳି ଯାଇପାରନ୍ତା ।

ଉଇଲିୟମ୍—ହଁ, ଠିକ୍ କହୁଚ, ମୁଁ ଚାହିଁଲେ ସବୁକିଛି କରିହୋଇପାରେ; କିନ୍ତୁ ତା'କରିବାକୁ ଗଲେ, ଏ ଘରର ଅନେକ କିଛି ବଦଳାଇବାକୁ ପଡ଼ିବ ।

[ଭିତରୁ ଆସିଚି ଯୋସେଫ୍]

ଯୋସେଫ୍—ସାର୍ ! Breakfast ଟାଇମ୍ ହୋଇଗଲା । All you come sir.

ଉଇଲିୟମ୍—ଯାଃ, ସବୁବେଳେ ଟାଇମ୍, ଟାଇମ୍ ! ଏ ଘରେ ଆଜିଠୁ Time ବୋଲି କିଛି ନାହିଁ । ଯିଏ ଯାହା ଯେତେବେଳେ ମନ ଖାଇବ । ଲଞ୍ଚ, ଡିନର୍ ବି ସେମିତି ଯାହାର ଯେତେବେଳେ ମନହେବ ଖାଇବ ।

ଯୋସେଫ୍—(ଆବାକାବା ହୋଇ, ମନେମନେ ପ୍ରମାଦ ଗଣୁଥିଲା) Sorry sir.

ଉଇଲିୟମ୍—ତୁ ଯା' ଯୋସେଫ୍, ପଞ୍ଜୁରୀ ଖୋଲି ସେ ଚଢ଼େଇଟାକୁ ଆଗ ଉଡ଼େଇଦେବୁ ।

ଯୋସେଫ୍—No sir, me get out sir. ମୋ ଚାକିରି ଚାଲିଯିବ ।

ଉଇଲିୟମ୍—ଚାକିରି ଯିବନି କି ତୁ ଯିବୁନାହିଁ । ଖାଲି ଚାଲିଯିବ ଏ ଘରୁ ଯେତେସବୁ ଆଇନ୍, କାନୁନ୍, ଶୃଙ୍ଖଳା ।

[ଭିତରୁ ପାଟିକରି ଆସିଛନ୍ତି ଯାଜକ]

ଯାଚକ—ଏସବୁ କ'ଣ ଚାଲିଚି ଉଇଲିୟମ୍ ? ଆଉ ତମେମାନେ ଠିଆହୋଇ ବେଶ୍ ଉପଭୋଗ କରୁଚ ?

[ଯୋସେଫ୍ ଓ ପିଲାମାନେ ସମସ୍ତେ ଭୟରେ ଭିତରକୁ ଚାଲିଗଲେ]

ଉଇଲିୟମ୍—ଏ ଫାଜିଲାମି କି ତାମସା ନୁହେଁ । ସାଧାରଣ ସେଲିବ୍ରେସନ୍ ।

ଯାଚକ—କ'ଣ କହିଲୁ celebration, କାହାର ସେଲିବ୍ରେସନ୍ ?

ଉଇଲିୟମ୍—ଲିସାର ନୂଆ ଜୀବନପାଇଁ ସେଲିବ୍ରେସନ୍ ।

ଯାଚକ--ତୋ' ମୁଣ୍ଡ କ'ଣ ଖରାପ ହୋଇଯାଇଚି ?

ଉଇଲିୟମ୍—ନା, ଠିକ୍ ଅଛି । ସେଇଥିପାଇଁ ତ କହୁଚି ଲିସା ଚାକିରିରେ join କରିବ ।

ଯାଚକ—କ'ଣ କହିଲୁ ?

ଉଇଲିୟମ୍—I will see that she joins her job.

ଯାଚକ—That's, not your business. ତୋର ଯଦି ଚାକିରି କରିବା କଥା, ତେବେ କ୍ଲବ ଅଛି, ବାର ଅଛି, ରାସ୍ତା ଅଛି, ପାର୍କ ଅଛି; କିନ୍ତୁ ତୋର ଜାଣିରଖିବା ଉଚିତ ଏଇଟା ମୋ ଘର । ଏଠିକାର ନିୟମ ଶୃଙ୍ଖଳା ତୋତେ ମନେପକାଇ ଦବାକୁ ପଡ଼ିବ ନାଇଁ ।

ଉଇଲିୟମ୍—ତମେ ବୋଧହୁଏ ଡରୁଚ ଯେ, ତମର ଏଇ ଅନ୍ଧାର କବରଖାନାର ପାଚେରି କାଳେ ଭୁଷୁଡ଼ିପଡ଼ିବ ?

ଯାଚକ—(ବିରକ୍ତିରେ) ମୁଁ ଦେଖୁଚି ମୋର ପୋଷା ପଶୁ ପକ୍ଷୀଙ୍କର ବି ଭଦ୍ରତାଜ୍ଞାନ ତୋ'ଠାରୁ ଅଧିକ ।

ଉଇଲିୟମ୍—ଏମିତି ଭାବେ ପଞ୍ଜୁରିରେ ପୋଷା ପକ୍ଷୀହୋଇ ମୁଁ ରହିବାକୁ ଚାହେଁନା, ମୁଁ ଚାହେଁ ସୁସ୍ଥ ସ୍ୱାଧୀନ ଜୀବନ । ମୋ'ପାଇଁ ନୁହେଁ, ଏ ଘରର ସମସ୍ତଙ୍କ ପାଇଁ ।

ଯାଚକ—ସ୍ୱାଧୀନ ଜୀବନ ? ସ୍ୱାଧୀନତାର ମୂଲ୍ୟ ତୋ ପାଖରେ କେଇଟା ଟଙ୍କା ଆଉ ବୋତଲେ ମଦ । ଏସବୁ ଶୁଣିବାକୁ ମୋର ଧୈର୍ଯ୍ୟ ନାହିଁ, ଯା’, ଚ୍ଲିଯା ଏଠୁ ।

ୱିଲିୟମ୍—(ବେପରୁଆ ଭାବରେ) ହଁ, ମୁଁ ଯିବ; କିନ୍ତୁ ଆଜି ନୁହେଁ । ଏଠିକାର ସମସ୍ତଙ୍କୁ ସ୍ୱାଧୀନ କଲା ପରେ ମୁଁ ଏଠୁ ବିଦାୟ ନେବି । ଲିସା କୁଆଡ଼େ ଗଲା ? ଲିସା, ଲିସା [ୱିଲିୟମ ‘ଲିସା’କୁ ଡାକିଡାକି ଭିତରକୁ ଚ୍ଲିଗଲେ ।]

ଯାଚକ— All right I will see you.

[ଯାଚକ ଭିତରକୁ ଚ୍ଲିଯିବା ବେଳକୁ ଏଡ଼ୱାର୍ଡ଼ ଆସିଛ ।]

ଏଡ଼ୱାର୍ଡ଼—କ’ଣ ହେଇଛୁ ଡ୍ୟାଡ ?

ଯାଚକ—ଏମାନେ ସମସ୍ତେ ମିଶି ମୋ ମୁଣ୍ଡଟାକୁ ଖରାପ କରିଦେବେ ଏଡ଼ୱାର୍ଡ଼ ।

ଏଡ଼ୱାର୍ଡ଼—ଆପଣ କାହିଁକି ସେମାନଙ୍କ ସାଥିରେ ଏତେ argument କରୁଛନ୍ତି ଡ୍ୟାଡ ? ଆପଣଙ୍କର ପରା high blood pressure ?

ଯାଚକ—କେମିତି ପାଟି ନ କରିବି ? ଦେଖନା ଏ ଘରର ଅବସ୍ଥା । ଯିଏ ଯାହା ଚ୍ହୁଛି ତା’ ମନମୁତାବକ କରିଯାଉଛି । Discipline, punctuality ଏ ଶେଷ୍ଟ ହାଉସରୁ ଏମାନେ ଉଠାଇ ଦବାକୁ ଚ୍ହାଁନ୍ତି ।

ଏଡ଼ୱାର୍ଡ଼—ମୁଁ କହୁଛି ଆପଣ ହିଁ ଉଚନ୍ତି ଏସବୁପାଇଁ ଦାୟୀ । ଆପଣ ଏମାନଙ୍କୁ ମୁହଁ ଦେଇଚନ୍ତି । And they have taken advantage of your goodness, ମତେ ଯଦି ଅନୁମତି ଦିଅନ୍ତି, I will set everything right.

ଯାଚକ—(ସୋଫାରେ ବସିପଡ଼ି) ଏଡ଼ୱାର୍ଡ଼, my boy, ତମେ ମତେ ଟିକିଏ help କର ।

ଏଡ଼ୱାର୍ଡ଼—କ'ଣ କହନ୍ତୁ ନା । ମୋତେ କ'ଣ କରିବାକୁ ହେବ କହନ୍ତୁ ।

ଯାଚକ—ଲିସାର କାନ୍ତିଦନପାଇଁ ଏଠୁ ଚଳିଯିବା ନିହାତି ଦରକାର । ତମେ ତାଙ୍କୁ ଟିକିଏ ବାହାରକୁ ନେଇଯାଅ । She needs a change.

ଏଡ଼ୱାର୍ଡ଼—କଥାଦେଉଛି, ମୁଁ ତାଙ୍କୁ ନେଇଯିବି ।

ଯାଚକ—Thank you, Thank you. ମୁଁ ଏଥର ନିଶ୍ଚିନ୍ତ ହେଲି । ମୋତେ ଟିକିଏ rest ଦିଅ ।



## ଚତୁର୍ଥ ଦୃଶ୍ୟ

[ ହୋଟେଲ ଗ୍ରୀନ୍‌ର ଡ୍ୟାନ୍‌ସ ହଲ୍ । ଆଜି ଡିସେମ୍ବର ଏକତିରିଶ ତାରିଖ । ଆଗାମୀ ବର୍ଷକୁ ସ୍ୱାଗତ ଜଣେଇବାପାଇଁ ବହୁ ଲୋକଙ୍କର ଆଜି ଭିଡ଼ ସେଇଠି । ନାନା ରଙ୍ଗିନ୍ ଆଲୋକ ସଜ୍ଜାରେ ହୋଟେଲଟି ହୋଇଉଠିଚି ଏକ ଅପୂର୍ବ ରୂପସୀ । କାଚ ଝରକାଦେଇ ଦେଖାଯାଉଚି ଡ୍ୟାନ୍‌ସ ହଲ୍ ଭିତର । ବାଦ୍ୟଯନ୍ତ୍ରୀମାନଙ୍କ ସମ୍ମିଳିତ ବାଦ୍ୟ ତାଳେତାଳେ ଆରମ୍ଭ ହୋଇଚି ନାଚ । ଦଳଦଳ ପୁରୁଷ ନାରୀ ନାଚୁଛନ୍ତି । ବିଦେଶୀ ମଦ ପିଇ, ନାଚ ଗୀତରେ ଭୋଳ ସମସ୍ତେ । ତୃଷାର violin ବଜାଉଛି । ଆଗରେ ତା'ର ନାଚ ନାଚିଚାଲିଚନ୍ତି ଅସଂଖ୍ୟ ଯୁବକ ଯୁବତୀ । ହଠାତ୍ ସେଇ ଯୁବକ ଯୁବତୀମାନଙ୍କ ମଧ୍ୟରେ ଦେଖାଦିଅନ୍ତି ଏଡ଼ୱାର୍ଡ ଆଉ ଲିସା । ତୃଷାର ଛାତିରେ ଅସହ୍ୟ ଯନ୍ତ୍ରଣା ଅନୁଭବ କରି violin ଛାଡ଼ି ଚାଲିଆସିଲା ବାହାରକୁ । ଆସି ଛିଡ଼ାହେଲା hotelର ବାଲକୋନିରେ । ଇତିମଧ୍ୟରେ ଲିସା ଏଡ଼ୱାର୍ଡ଼କୁ ଛାଡ଼ି ଏକା ନାଚିଲେ । ଏଡ଼ୱାର୍ଡ଼ ହୋଟେଲର ନର୍ତ୍ତକୀ ହାତଧରି ନାଚିଚାଲିଥାଏ । ଲିସା ତୃଷାରକୁ ଖୋଜିଖୋଜି ବାଲକୋନିକୁ ଚାଲିଆସିଲା ।]

ଲିସା—ତୁଷାର !

ତୁଷାର—ତମେ ?

ଲିସା—ଯଦିନେ ତମକୁ ଖୋଜି ପାଇବ ସେ ବିଶ୍ୱାସ ମୋର ଥିଲା; କିନ୍ତୁ ଏଇଠି ଇମିତି ଭାବରେ ଦେଖାହେବ, ମୁଁ ମୋଟେ ଭାବିପାରିନ ।

ତୁଷାର—ମୁଁ କିନ୍ତୁ ଜାଣିଥିଲି ଯଦିନେ ତମେ ଆସିବ । କାରଣ ଯେଉଁ ଘରର ସମସ୍ତେ ମୋତେ ଆଘାତ କରିଯାଇଛନ୍ତି, ଖାଲି ବାକିଥିଲ ତମେ ।

ଲିସା—(ଅଭିମାନ କ୍ଷୁବ୍‌ଧ କଣ୍ଠରେ) ହୁଁ, ଆଘାତ କରିବାକୁ ଆସିଚି । ତା'ହୋଇ ନ ଥିଲେ, ବର୍ଷ ଶେଷ ରାତିର ଏଇ ଉତ୍ସବରେ, ଏଇ ସାଜ, ସମାରୋହ ଭିତରେ ଏଡ୍‌ୱାର୍ଡ଼ର ହାତଧରି ରଙ୍ଗିନ ପ୍ରଜାପତି ଭଳି ମୁଁ ନାଚୁଚି, ତମରି ଆଗରେ ନାଚୁଚି । ଏ ଏକ ବିସ୍ମୟ !! ଯୁଏଁଠୁ ବଳି ଆଘାତ ଆଉ କ'ଣ ହୋଇପାରେ ?

ତୁଷାର—ଲିସା !!!

ଲିସା—ତମେ ଭାଓଲିନ୍ ବଜାଉଛ ଆଉ ମୁଁ ତମରି ଆଗରେ ଏଡ୍‌ୱାର୍ଡ଼ର ବାହୁବନ୍ଧନ ଭିତରେ ପାଦରେ ପାଦମିଳାଇ ନାଚୁଚି—ଯୁଏଁଠୁ ବଳି ଉପହାସ ଆଉ କ'ଣ ହୋଇପାରେ ?

ତୁଷାର—ନା, ସେ ଧାରଣା ତମର ଭୁଲ । ମୋପାଇଁ ସେଇଟା ଆଘାତ ନୁହେଁ କି ଉପହାସ ନୁହେଁ । ଏଡ୍‌ୱାର୍ଡ଼କୁ ନେଇ ତମେ ଗୋଟାଏ ରାତି କାହିଁକି, ଯଦି ପ୍ରତିଟି ରାତି ଏଇଠି ନାଚ କରୁଥାଅ ତା'ହେଲେ ମୁଁ ତିଳେହେଲେ ଆଘାତ ପାଇବି ନାହିଁ ।

ଲିସା—ତା'ହେଲେ କୁହ, କାହିଁକି ଏଡ୍‌ୱାର୍ଡ଼ ସାଥିରେ ମୋତେ ବଲ୍-ରୁମ୍‌ରେ ନାଚିବାର ଦେଖି ତମେ ସେଠୁ ଚାଲିଆସିଲ ଏଇ ନିରୋଳା ବାଲକୋନିକୁ ? କୁହ, ତୁଷାର କୁହ—ତମ ମନର ଅନ୍ଧାରି କୋଣରେ ସତରେ କ'ଣ ତମେ ଆଘାତ ପାଇନାହଁ, କୁହ ?

ତୁଷାର—ନା, ଲିସା ଆଦୌ ନୁହେଁ ।

ଲିସା—(ତୁଷାରର ଅଭିନୟକୁ ଲକ୍ଷ୍ୟକରି ହସିଉଠିଚି ବନ୍ଦ୍ରୁପରେ)

ତୁଷାର—ତମେ ହସୁଚ ?

ଲିସା—ହଁ, ହସୁଚି । ତମ ଅଭିନୟ ଦେଖି ମୋତେ ହସଲାଗୁଚି । ସତରେ ଚମତ୍କାର ଅଭିନୟ କରିପାର ତମେ ।

ତୁଷାର—ଅଭିନୟ ?

ଲିସା—ନୁହେଁ ଆଉ କ'ଣ ? ତମ ନିଜ ମନକୁ ବି ତମେ ଫାଙ୍କିଦବାକୁ ବସିଛ । ଏମିତି ବାହାନାକରି ତମେ କ'ଣ ସତରେ ତମ ମନର ଦୁର୍ବଳତାକୁ ସବୁଦିନପାଇଁ ଲୁଚେଇ ରଖିପାରିବ ?

ତୁଷାର—ମାନୁଚି, ଦୁର୍ବଳତା ମୋର ଥିଲା; କିନ୍ତୁ ସେଦିନ ରାତିରେ ଦେହରେ ଜ୍ୱରର ଉତ୍ତାପ ନେଇ ଯେତେବେଳେ ସେଇ ଝଡ଼ ଅନ୍ଧାର ଭିତରେ ତମ ଘରୁ ବାହାରିଆସିଲି ସେଇ ରାତିର ବରଫ ଶୀତଳତା ଭିତରେ ମୋର ସବୁ ସୂକ୍ଷ୍ମ ଅନୁଭୂତି ଜଡ଼ ହୋଇଯାଇଛି ।

ଲିସା—ତୁଷାର !!!

ତୁଷାର—ହଁ, ତା'ପରେ ମୋର କଅଁଳ ମନଟାକୁ ଗୁରୁକ ପରେ ଗୁରୁକମାରି କ୍ଷତବିକ୍ଷତ କରିଛି, ରକ୍ତାକ୍ତ କରିଛି । ଚିରଦିନପାଇଁ ତାକୁ ପଙ୍ଗୁ, ଅଥର୍ବ, ଜଡ଼ କରିଦବାକୁ ଚାହିଁଛି । ଭୁଲିଯିବାକୁ ଚାହିଁଛି···ତୁଷାର ଜୀବନରେ 'ଲିସା' ବୋଲି ଜଣେ କିଏ ଥିଲା, ଯିଏ ତା'ମନରେ ଭରି ଦେଇଥିଲା ପ୍ରଜାପତିର ଛନ୍ଦ ଚପଳତା, ଇନ୍ଦ୍ରଧନୁର ବର୍ଣ୍ଣବିଚିତ୍ରା, ଆଷାଢ଼ ମୟୂରର ଉତ୍କଣ୍ଠା ।

ଲିସା—କିନ୍ତୁ କାହିଁକି ତୁଷାର ? ଲିସା ତ ଜୀବନରେ ଏପରି କିଛି କରିନି, ଯୋଉଥିପାଇଁ ତୁମେ ତା'ଉପରେ ଅଭିମାନ କରି ନିଜକୁ ଶାସ୍ତି ଦବ । ନିଜେ ନିଜକୁ ଏମିତି ଶାସ୍ତି ଦବା ଆଗରୁ ଥରେ ଭାବି ଦେଖିଲ ନାହିଁ କାହିଁକି, ଲିସାଭଳି ଅସହାୟ ଝିଅଟିର ସେଠି କ'ଣ କରିବାର ଥିଲା ?

ତୁଷାର—ଇଚ୍ଛା କରିଥିଲେ ସେ ବାଧାଦେଇ ପାରିଥାଆନ୍ତା । ପ୍ରତିବାଦ କରିଥାଆନ୍ତା, ଚିତ୍କାର କରିପାରିଥାଆନ୍ତା । ହୁଏତ ସେଇ ରାତିରେ ତୁଷାରର ହାତଧରି ସେ ଚିରଦିନପାଇଁ ସେ ଘରୁ ବାହାରିଆସି ପାରିଥାଆନ୍ତା । କିନ୍ତୁ କିଛି ସେ କରିନି ।

ଲିସା—(ଅଶ୍ରୁଜଡ଼ିତ କଣ୍ଠରେ) ନା, କିଛି ସେ କରିନି, କିଛି କରିପାରିନି । ନୀରବରେ ସବୁ ଦେଖିଛି, ଶୁଣିଛି । ଅସହାୟ ଭାବରେ ସବୁ ବରଦାସ୍ତ କରିଛି ଆଉ ସେଠୁ ଚାଲିଯାଇ ନିର୍ଜନରେ ଆଖିରୁ ଲୁହଢାଳିଛି । ସେଥିକରୁ ତମେ ବୁଝିପାରିଲନାହିଁ ସେ କେତେ ଦୁର୍ବଳ ? କେତେ ଅସହାୟ, କେତେ ନିଃସ୍ୱ !!! ଅନ୍ୟାୟକୁ ବାଧାଦବାର ଶକ୍ତି ତା'ର ନାହିଁ । ଚିରଦିନପାଇଁ ସେ ଏକ ଅନୁଭୂତିହୀନ ପାଷାଣୀ ପ୍ରତିମା ।

ତୁଷାର—ଲିସା !

ଲିସା—ଇମିତି ଗୋଟିଏ ଅସହାୟ ଝିଅ ଉପରେ ତମେ ରାଗିପାରିଲ ? ତମେ ଅଭିମ ନ କରିପାରିଲ ?

ତୁଷାର—ନା, ଅଭିମାନ ମୁଁ କରିନି । ମୁଁ ଠିକ୍ ବୁଝିଛି···ତା ଆଉ ମୋ ଭିତରେ ଏକ ବିରାଟ ବ୍ୟବଧାନ ରହିଛି ଯେଉଁ ବ୍ୟବଧାନ ସ୍ନେହ, ମମତା ଆଉ ଭଲ ପାଇବାର ସେତୁ ଦେଇ ଯୋଡ଼ି ହୁଏନା । ସେମାନେ ଦୁହେଁ ଚାହିଁଲେ ବ ତା'ସମ୍ଭବ ନୁହେଁ ।

ଲିସା—କାହିଁକି ତୁଷାର, କାହିଁକି ନୁହେଁ ?

ତୁଷାର—ଯେଉଁ ହୋଟେଲରେ ଏଡ଼ୱାର୍ଡ଼ଙ୍କ ସହିତ ତମେ ଆସି ପାଞ୍ଚଶହ ଟଙ୍କାର ବିଲ୍ ପେମେଣ୍ଟ କରିପାର ସେଇ ହୋଟେଲରେ ମୁଁ ରାତିକୁ ମାତ୍ର ୧୦୦ଟଙ୍କାର ଭାଓଲିନ୍ ବାଦକ ! ତମ ମୋ ଭିତରେ ଏଇ ବ୍ୟବଧାନ କ'ଣ କେବେ ଦୂର ହୋଇପାରିବ ? ନା, ଲିସା ନା, ତମେ ଫେରିଯାଅ, ଯାଅ ଲିସା···

ଲିସା—ତୁଷାର !!!

ତୁଷାର—ଆଜି ନବବର୍ଷର ଏଇ ଉତ୍ସବ କୋଳାହଳ ଭିତରେ ହଜିଗଲା ଦିନର ସେଇ ଗୋପନ କାହାଣୀକୁ ସ୍ୱପ୍ନ ପରି ଝରେଇ ଦିଅ । ସମୟର ବୈଶାଖୀରେ ସେ ହଜିଯାଉ, ମିଶିଯାଉ, ଲିଭିଯାଉ ସେଇ ପୁରୁଣା ମୁହଁ, ସେଇ ପୁରୁଣା ପରିଚୟ । ନବବର୍ଷକୁ ସ୍ୱାଗତ କରିନିଅ ତୁମେ । ନୂତନକୁ କରିନିଅ ଜୀବନର ଚଲାପଥର ସାଥୀ ।

ଲିସା—ତୁମ ମୁହଁରୁ ଏଇକଥା ଶୁଣିବ ବୋଲି ମୁଁ କ'ଣ ଏଠିକି ଆସିଥିଲି ତୁଷାର ? ପ୍ରତିଟି ରବିବାର ସଜରେ 'ଏଡ୍‌ୱାର୍ଡ଼'କୁ ସାଥିରେ ନେଇ ପ୍ରତିଟି ହୋଟେଲରେ ତମକୁ ଖୋଜିବାର ଫଳ କ'ଣ ଏଇଆ ?

ତୁଷାର—ମରୀଚିକା ପଛରେ ଧାଇଁବାକୁ ମୁଁ ତୁମକୁ ଉତ୍ସାହ ଦେଇନି ଲିସା; ବରଂ ଜଣେ ଶୁଭାକାଂକ୍ଷୀ ଭାବରେ ତମ ନୂତନ ଜୀବନର ଶୁଭକାମନା କରି ମୁଁ ବିଦାୟ ନେଇ ଯାଉଛି । ତମେ ଯାଅ ଲିସା, ଡେରିକଲେ 'ଏଡ୍‌ୱାର୍ଡ଼' ହୁଏତ ଏଠିକି ଆସିପାରନ୍ତି ।

[ ଏହି ସମୟରେ ଘଣ୍ଟାରେ ଠନ୍ ଠନ୍ ହୋଇ ବାରଟା ବାଜିଲା । ଭିତରୁ ସମ୍ମିଳିତ କଣ୍ଠରେ ଶୁଭିଲା Happy New Year. ]

ଲିସା—ଏତେ ଖୋଜିଖୋଜି ତୁମକୁ ପାଇଛି । ଆଉ ତୁମେ ମୋତେ ଭୁଲିଯିବାକୁ କହୁଛ ?

ତୁଷାର—ଏକତିରିଶ ଡିସେମ୍ବର ରାତି ବାରଟା । ପୁରୁଣା ହୋଇଗଲା ବର୍ଷଟା । ନବବର୍ଷକୁ ନୂତନ ଛନ୍ଦରେ ଅଭିନନ୍ଦନ ଜଣେଇବାକୁ ପଡ଼ିବ । ମତେ ନୂଆ ଛନ୍ଦରେ ଭାଓଲିନ୍ ବଜାଇବାକୁ ପଡ଼ିବ । ନଚେତ୍ ହୋଟେଲ ମାଲିକ ଚିତ୍କାର କରିଉଠିବେ । I am neglecting my duty. ହୁଏତ ଏତେ ସମୟ ଫାଙ୍କିଦେଇଛି ବୋଲି ମୋର ପ୍ରାପ୍ୟରୁ କିଛି କାଟିଦେଇପାରନ୍ତି ।

ଲିସା—ତୁଷାର ! (ତୁଷାରକୁ ଆଲିଙ୍ଗନ କରିବାକୁ ଆଗେଇ ଆସୁଥିଲା)

ତୁଷାର—ନବବର୍ଷର ଶୁଭେଚ୍ଛା ନିଅ ଲିସା; ନା, ଖ ଲି ତୁମକୁ ନୁହେଁ wish happy new year to both of you. ମୁଁ ଆସୁଛି । good bye ଲିସା—[ତୁଷାର ଭିତରକୁ ଚାଲିଯାଉଛି]

ଲିସା—(ଅଶ୍ରୁ ଆବେଗରେ) ତୁଷାର, ତୁଷାର ! [କାନ୍ଦକାନ୍ଦ ଲୋଟିପଡ଼ିଲା]



## ପଞ୍ଚମ ଦୃଶ୍ୟ

[ ଯାଚକଙ୍କ Guest houseର drawing room. ସମୟ ସନ୍ଧ୍ୟା । ଏଡ଼ୱାର୍ଡ଼ କାଉଚ ଉପରେ ବସି ଖବର କାଗଜ ଉପରେ ଆଖିବୁଲାଉଥିଲ । ଏହି ସମୟରେ ବାହାରେ କଲିଂବେଲ ବାଜୁଛି । ]

ଏଡ଼ୱାର୍ଡ଼—Yes, come in please. ବାହାରୁ ଆସିଛନ୍ତି ମିସେସ୍ ଖାନ୍ ।

ଏଡ଼ୱାର୍ଡ଼—ଆରେ ମିସେସ୍ ଖାନ୍ ଯେ, ହୋଟେଲ "The green" ଛାଡ଼ି ଆପଣ ଏଠି ?

ମିସେସ୍ ଖାନ୍—ମୁଁ ମଧ୍ୟ ଆପଣଙ୍କୁ ଏଠି ଦେଖିବି ବୋଲି ଆଶାକରିନ । How is it ?

ଏଡ଼ୱାର୍ଡ଼—ଓ, ଆପଣ ଜାଣିନାହାନ୍ତି ? ମୁଁ ତ ଆଜିକାଲି ଏଇଠି ରହୁଛି । ଅଚ୍ଛା, ଆପଣ କୁଆଡ଼େ ଅଇଥିଲେ କହନ୍ତୁ ତ ?

ମିସେସ୍ ଖାନ—ତୁଷାର ବାବୁଙ୍କୁ ଖୋଜିବାକୁ ।

ଏଡ଼ୱାର୍ଡ଼—ତୁଷାର ?

ମିସେସ୍ ଖାନ୍—I see, ଆପଣ ତାଙ୍କୁ ଜାଣିନାହାନ୍ତି, ସେ ଆମ ହୋଟେଲର ଗିଟାର ପ୍ଲେୟର । New years ରାତରେ କୁଆଡ଼େ ଚାଲିଯାଇଛନ୍ତି । ଆମେ ତାଙ୍କୁ ଢେ଼ର ଖୋଜି ପାଇନୁ । ଭାବିଲି ତାଙ୍କ ବିଷୟରେ ଏଠି ହୁଏତ କିଛି ଖବର ମିଳିପାରିବ ।

ଏଡ଼ୱାର୍ଡ଼—କିନ୍ତୁ ଆପଣଙ୍କ ହୋଟେଲର ଗିଟାର୍ ପ୍ଲେୟରର ଖବର ଏଠୁ ପାଇବେ ବୋଲି ଆଶାକରୁଛନ୍ତି କେମିତି ?

ମିସେସ୍ ଖାନ୍—ଆଗେ ସେ ଏଇଠି ରହୁଥିଲେ; ତେଣୁ ଭାବିଲି ଏମାନଙ୍କୁ ତାଙ୍କ ଠିକଣାଟା ମିଳିପାରେ ।

ଏଡ୍‌ଓ୍ୱାର୍ଡ୍—I see, କିନ୍ତୁ ସେ ତ ଏଠୁ ଅନେକଦିନ ହେବ ଚାଲିଗଲେଣି ।

ମିସେସ୍ ଖାନ୍—ଆଚ୍ଛା, ଛାଡନ୍ତୁ ସେ କଥା । ଆପଣ ଆଜି ଆମ ହୋଟେଲଆଡ଼େ ଯାଉନାହାନ୍ତି ଯେ କ'ଣ ଖବର ? Miss ଚାର୍ଲସ୍ ଆପଣଙ୍କ କଥା ପଚାରୁଥିଲେ ।

ଏଡ୍‌ଓ୍ୱାର୍ଡ୍—Is it ?

ମିସେସ୍ ଖାନ୍—ପ୍ରାୟ ତ ସେ ଆପଣଙ୍କ କଥା ପଚାରନ୍ତି ।

ଏଡ୍‌ଓ୍ୱାର୍ଡ୍—Miss Char's ତା'ହେଲେ ମୋର absenceଟା feel କରୁଛନ୍ତି ନା ?

ମିସେସ୍ ଖାନ୍—Feel କରୁଛନ୍ତି ମାନେ ? She is mad after you. ମୁକ୍ତ କଣ୍ଠରେ ସେ ସ୍ୱୀକାର କରନ୍ତି, ଆପଣ ତାଙ୍କୁ ଯେଉଁ ଆନନ୍ଦ ଦେଇଛନ୍ତି···

ଏଡ୍‌ଓ୍ୱାର୍ଡ୍—(ଗର୍ବ ଅନୁଭବକରି) Yes, I know, she can't forget those happy days.

ମିସେସ୍ ଖାନ୍—ଆପଣ ଦୁଇଜଣଙ୍କୁ ଦେଖି ମୁଁ ତ ଭାବୁଥିଲି it will end in marriage.

ଏଡ୍‌ଓ୍ୱାର୍ଡ୍—ଆପଣ ଜାଣନ୍ତି ମିସେସ୍ ଖାନ୍ ? ମୋ ସଙ୍ଗେ company ଦେବାକୁ ନୂଆ ନୂଆ ଝିଅମାନେ ସବୁବେଳେ eager, ମୁଁ କିନ୍ତୁ କାହାର ପାଖରେ ବେଶି ସମୟ ରହିପାରେନା । But I need a change sooner or later. I am always after new flowers.

[ଫୁଲଦାନରୁ ଗୋଟିଏ ଫୁଲ ଛଡ଼େଇଆଣି ଦେଖୁଥିଲେ]

ମିସେସ୍ ଖାନ୍—ତା'ହେଲେ ବର୍ତ୍ତମାନ ସେଇ ନୂଆ ଫୁଲଟି କଏ ଜାଣିପାରେକି ?

ଏଡ଼ୱାର୍ଡ଼—ସେ ହେଲା ଲିସା ଯାଦବ !!! ସତ କହୁଛି ମିସେସ୍ ଖାନ୍, ଲିସାକୁ ଦେଖିଲା ପରେ I have changed the decision. No more flarting, with any body else. ବର୍ତ୍ତମାନ ଲିସା ଆଉ ମୋ ଭିତରେ ସମ୍ପର୍କଟା ଯେଉଁଠି ପହଞ୍ଚିଛି That will definitely end in marriage. ଆଜିଠୁ ଜାଣିଥାଆନ୍ତୁ ଆପଣଙ୍କ ହୋଟେଲରେ ଆମର wedding ପାର୍ଟିଟା ହବାକୁ ଯାଉଛି ।

ମିସେସ୍ ଖାନ୍—(Hand shake କରି) congratulation କରନ୍ତି ।

ଏଡ଼ୱାର୍ଡ଼—କ'ଣ କହନ୍ତୁ ।

ମିସେସ୍ ଖାନ୍—କିଛି ନୁହେଁ । ତେବେ କହୁଥିଲି କ'ଣ କି, ଆପଣଙ୍କର well wisher ହିସାବରେ ମୋର ପଦେ କହିବାର ଅଛି ।

ଏଡ଼ୱାର୍ଡ଼—ତା'ହେଲେ ତ ମୋର ଜାଣିବା ନିହାତି ଦରକାର ।

ମିସେସ୍ ଖାନ୍—କିନ୍ତୁ ଏଥିରେ ଯଦି ଆପଣ ଦୁହିଁଙ୍କ relationshipରେ କିଛି ଆଞ୍ଚଆସେ ମୋତେ ଦୋଷୀ କରିବେ ନାହିଁ ତ ?

ଏଡ଼ୱାର୍ଡ଼—Impossible, you are my welwisher. ମୋର ଭଲମନ୍ଦ ବିଷୟରେ କହିବାର ଅଧିକାର ଆପଣଙ୍କର ନିଶ୍ଚୟ ଅଛି ।

ମିସେସ୍ ଖାନ୍—ତା'ହେଲେ ଶୁଣନ୍ତୁ । ମୁଁ ଶୁଣିଥିଲି Lisa is after Tusar. ଲିସା ଆଉ ତୁଷାର ଭିତରେ ଗୋଟାଏ ସମ୍ପର୍କ ଗଢ଼ିଉଠିଛି ।

ଏଡ଼ୱାର୍ଡ଼—ନା, ନା, ତୁଷାର ଏଠି ଥିଲାବେଳେ ଲିସା ସହିତ ଟିକିଏ ଇନ୍‌ଫିଚୁଏସନ୍ ହୋଇଥିଲା; That is all. ତ'ଠୁ ବେଶି କିଛି ନୁହେଁ ?

ମିସେସ୍ ଖାନ୍—ନା Mr. Edward. ତା'ଠୁ ଅନେକ ବେଶି । ଆପଣ ଏକଥା ମୋଠୁ ନ ଶୁଣି ଆମ ହୋଟେଲ୍‌ରେ ଯେକୌଣସି staffଠୁ ଶୁଣିଲେ ଜାଣିବେ ।

ଏଡ୍‌ଓ୍ୱାର୍ଡ୍—Impossible, ଏସବୁ ବାଜେ କଥା ।

ମିସେସ୍ ଖାନ୍—Excuse me Mr. Edward । ତା'ହେଲେ ବାଧ୍ୟହୋଇ ମତେ ସବୁକଥା ଖୋଲି କହିବାକୁ ପଡ଼ିବ ।

ଏଡ୍‌ଓ୍ୱାର୍ଡ୍—କହନ୍ତୁ Mrs. Khan.

ମିସେସ୍ ଖାନ୍—ଗତ New years ରାତିରେ ଯେତେବେଳେ ଆପଣ heavy drink କରି ମୋ ହୋଟେଲରେ ନର୍ତ୍ତକୀ ସହିତ ନାଚନାଚି ଶୋଇପଡ଼ିଥିଲେ, ସେତେବେଳେ ଆପଣଙ୍କ beloved କନ୍ୟା କୋଉଠିଥିଲି ଜାଣନ୍ତି ? Violin player ଉଷାର ପାଖରେ ଆମର ହୋଟେଲର ନଗ୍ରେଲା ବାଲକୋନୀରେ ।

ଏଡ୍‌ଓ୍ୱାର୍ଡ୍—(ଗମ୍ଭୀର ହୋଇ) Is it a fact.

ମିସେସ୍ ଖାନ୍—ହଁ Mr. Edward । Up on God. I tell you, it is a fact.

[ଏଡ୍‌ଓ୍ୱାର୍ଡ୍ ରାଗରେ, ହାତରେ ଧରିଥିବା ସିଗାରେଟ ଫିଙ୍ଗିଦେଲେ ମିସେସ୍ ଖାନ୍ ଏଡ୍‌ଓ୍ୱାର୍ଡ୍‌ଙ୍କୁ ଦେଖି ହସୁଥିଲେ ।]

ମିସେସ୍ ଖାନ୍—ଆପଣଙ୍କ ମନରେ ଦୁଃଖ ଦେଲି । କ୍ଷମାକରିବେ ମି. ଏଡ୍‌ଓ୍ୱାର୍ଡ୍, ଆପଣ ମୋତେ ବାଧ୍ୟକରିବାରୁ କେବଳ ଏକଥା କହିଲି । ନଚେତ୍ ଆମେ ହୋଟେଲବାଲାମାନେ କାହାର personal relationship ନେଇ ସବୁବେଳେ ନୀରବ ରହୁ । ସେଇଟା ଆମର Trade secret, please don't misunderstand me. ଆଚ୍ଛା, ଆଜି ମୁଁ ଆସୁଛି, ବାଏ ।

[ ମିସେସ୍ ଖାନ୍ ଚାଲିଗଲେ । ଏଡ୍‌ଓ୍ୱାର୍ଡ୍ ଗୋଟାକ ପରେ ଗୋଟାଏ ସିଗାରେଟ୍ ଲଗାଇ ଫିଙ୍ଗି ଦେଉଥିଲେ । ଏତିକବେଳେ ବାହାରୁ ଆସିଛନ୍ତି ଯାଚକ । ]

ଯାଚକ—କ'ଣ ହେଉଛ ଏଡ଼ଓ୍ୱାର୍ଡ଼ ? ମନେହେଉଛ ତମେ ଯେମିତ ଖୁବ୍ ଚିନ୍ତିତ ଅଛ ।

ଏଡ଼ଓ୍ୱାର୍ଡ଼—ମୋର ଭଲମନ୍ଦ ବୁଝିବା ଆଗରୁ ଆପଣ ଏତକ ଜାଣିରଖନ୍ତୁ ମୁଁ ଆପଣଙ୍କ guest house ଛାଡ଼ି କାଲି ଚାଲିଯାଉଛି ।

ଯାଚକ—କ'ଣ ହେଉଛ କୁହନା । କାହିଁକି ତମେ ଚାଲିଯିବ ?

ଏଡ଼ଓ୍ୱାର୍ଡ଼—ସେଦିନ ଆପଣ ମୋତେ କହିଥିଲେ ନା ? hotelର ନର୍ତ୍ତକୀମାନଙ୍କ ସାଥିରେ ଘନିଷ୍ଠ ହେବା ଭଲ ନୁହେଁ । ସେ adviceଟା ଆଜି ନିଜ ଝିଅକୁ ଦେଇ ଦେଖନ୍ତୁ । କୁହନ୍ତୁ—ହୋଟେଲର violin player ସାଙ୍ଗରେ ଫ୍ଲାର୍ଟ୍ କରିବାଟା ଭଲକଥା ନୁହେଁ । I mean ସମ୍ମାନଜନକ ନୁହେଁ ।

ଯାଚକ—ତୁମେ କିସ କଥା କହୁଛ ଏଡ଼ଓ୍ୱାର୍ଡ଼ ? ମୁଁ ତ ତାକୁ ତମ ଦାୟିତ୍ୱରେ ଛାଡ଼ିଦେଇଛି । ତୁମେ ଏସବୁ କ'ଣ କହୁଯାଉଛ ? ମୋ ଝିଅ କେବେ ସେମିତ ହେଇପାରେନା ।

ଏଡ଼ଓ୍ୱାର୍ଡ଼—କୌଣସି ପ୍ରମାଣ ନ ରଖି, ମୁଁ ଆପଣଙ୍କୁ ଚ୍ୟାଲେଞ୍ଜ ଦେଉନାହିଁ । ହୋଟେଲ Greenର ମ୍ୟାନେଜର ମିସେସ୍ ଖାନ୍ଠୁ ଆରମ୍ଭକରି ହୋଟେଲର ସମସ୍ତ staff ଲିସାକୁ New year ରାତିରେ ତୁଷାର ସାଙ୍ଗରେ ଦେଖିଛନ୍ତି ହୋଟେଲର ନିର୍ଜ୍ଜନା ବାଲକୋନିରେ ।

ଯାଚକ—(ରାଗରେ) ଆଉ ଏଡ଼ଓ୍ୱାର୍ଡ଼, ବନ୍ଦକର । ଏକଥା ଆଗରୁ ନିଶ୍ଚୟ ତମେ ଜାଣିଚ ଯେ, ତୁଷାର ଏଇଠି ଥିଲାବେଳେ ତା'ପ୍ରତି ଲିସାର କିଛିଟା infetuation ଥିଲା । ଏକଥା ତୁମକୁ ମୁଁ ଲୁଚାଇ ନାହିଁ । ତମରିପାଇଁ ତୁଷାରକୁ ମୁଁ guest houseରୁ ଧକ୍କାଦେଇ ବିଦା କରିଦେଇଛି । ଲିସାକୁ ବାଧ୍ୟକରିଚି ତୁମ ସହିତ ମିଳାମିଶା କରିବାପାଇଁ । ସବୁବେଳେ ତୁମକୁ company ଦବାକୁ । ଲିସା ମଧ୍ୟ ମୋ କଥା ମାନିଚ । କେବଳ

ତମର ସାଥିରେ ସେ ବାହାରକୁ ଯାଇଛୁ । ତଥାପି ଯଦି ଲିସା ତଳକୁ ଖସିଯାଇଥାଏ, ସେଥିପାଇଁ ଦାୟୀ ମୁଁ ନୁହେଁ ତମେ ।

ଏଡ୍‌ଓ୍ୱାର୍ଡ୍—(ଦବଯାଇ) ସବୁକଥା ଆପଣ କରନ୍ତୁ, ମୁଁ ମାନୁଛି; କିନ୍ତୁ ଲିସା ମୋ ପାଖେପାଖେ ରହି ମଧ୍ୟ ମୋର ଧରାଛୁଆଁ ବାହାରକୁ ଚାଲିଯାଇଛୁ । ମୋର ଏମିତି କୌଣସି ଅଧିକାର ନାହିଁ ଯେ, ମୁଁ ତାକୁ ଶାସନ କରିବି, ଶାସ୍ତି ଦେଇପାରିବି । ଆପଣ ରାଜିଅଛନ୍ତି; ମୋତେ ସେ ଅଧିକାର ଦିଅନ୍ତୁ ।

ଯାଚକ—ଯେଉଁ ଅଧିକାର ଦିନେ ତମର ହେବ, ଆଜି ସେଇଟା ମାଗିନବା କ'ଣ ଦରକାର ? ଯଦି ତମେ ରାଜିଅଛ, କାଲି ମୁଁ ସବୁ ଠିକ୍ କରିଦେବି ।

ଏଡ୍‌ଓ୍ୱାର୍ଡ୍—ନା, କାଲି ନୁହେଁ । ଆଜି ଏଇ ମୁହୂର୍ତ୍ତରେ ତାଙ୍କୁ ପଚାରି ନଅନ୍ତୁ ।

ଯାଚକ—Allright. ଆଜି ତମର ଆଗରେ ମୁଁ ଲିସାକୁ ପଚାରିବି । ଯୋସେଫ୍, ଯୋସେଫ୍ ! [ପ୍ରବେଶ କରିବ ଯୋସେଫ୍]

ଯୋସେଫ୍—Yes sir.

ଯାଚକ—ଲିସା କାହିଁ ?

ଯୋସେଫ୍—Kitchenରେ ସାର୍ ।

ଯାଚକ—ତାକୁ କହ, ଦୁ'କପ୍ କଫିନେଇ ଏଠିକି ଆସୁ ।

ଯୋସେଫ୍—Yes sir, going sir.

ଏଡ୍‌ଓ୍ୱାର୍ଡ୍—ଆପଣ କିନ୍ତୁ, ରାଗରେ ଏସବୁ କରୁନାହାନ୍ତି ତ ?

ଯାଚକ—ନା, ଏଡ୍‌ଓ୍ୱାର୍ଡ୍ । ତୁମ ହାତରେ ଲିସାକୁ ଦେବି ବୋଲି ମୁଁ ଅନେକ ଆଗରୁ decision ନେଇଛି । ଲିସାଭଳି ଝିଅକୁ ବାହାହେବାପାଇଁ କେତେ ବଡ଼ବଡ଼ ଘରୁ proposal ଆସିଛି; କିନ୍ତୁ ମୋ କଥା ତୁମେ ବିଶ୍ୱାସକର ଏଡ୍‌ଓ୍ୱାର୍ଡ୍ ସବୁ proposal ମୁଁ ଏଡ଼େଇ ଦେଇଛି ଆଉ ତମର ସାଥିରେ ତାର ମିଳାମିଶାକୁ ପ୍ରଶ୍ରୟ ଦେଇଛି ।

[ଲିସା trayରେ ଦୁ'କପ୍ କଫିନେଇ ପ୍ରବେଶ କଲା]

ଯାଚକ—ଦେଖିଲ ଏଡ୍‌ୱାର୍ଡ୍, ମୁଁ କହୁଚ କି ନାହିଁ ଲିସା କଫିନେଇ ଆସିଲାଣି । ଯୋଉ ଅଣ୍ଡାହେଇଚ ନା, କଫି କପେ ନହୋଇ ଦରକାର । ଖାଲି କଫି ନୁହେଁ ମୋର ମା'ର ହାତତିଆରି କଫି ।

[ଲିସା ନୀରବରେ ଟି'ପୟ ଉପରେ କଫି ଥୋଇଦେଇ କଫିକୁ ଗ୍ଲାସରେ ଢାଳୁଥିଲା । ]

ଯାଚକ—କ'ଣ କହୁଥିଲି କି ମା', ଏଇ ଏଡ୍‌ୱାର୍ଡ୍ ସାଥିରେ ମୁଁ ତୋର marriage ଠିକ୍ କରିଚ । ମୁଁ ଜାଣେ ତୁ ଏଥିରେ ଅମତ ହେବୁନି ।

[ ଲିସା ନୀରବରେ କଫି କପ୍ ଦୁଇଟି ବଢ଼େଇ ଦେଇଚ ଯାଚକ ଓ ଏଡ୍‌ୱାର୍ଡ୍‌କୁ । ]

ଯାଚକ—କ'ଣ, ନୀରବ ରହିଲୁ ଯେ ? ଏଡ୍‌ୱାର୍ଡ୍‌ପରି ଧନୀ ଆଉ smart young man ତୁ କୋଉଠି ପାଇବୁ ନାହିଁ । He will be your company through out your life.

[ ଲିସା ନୀରବରେ ଆଖିରୁ ଦୁ'ଟୋପା ଲୁହ ଝରେଇଦେଲା । ଏହି ସମୟରେ ଭିତରଘରୁ ଆସିଛନ୍ତି ଉଇଲିୟମ୍ । ସୋଫା ଥଳରେ ରହି ସେ ସବୁ ଶୁଣିଛନ୍ତି । ]

ଯାଚକ—(ଖୁସିହୋଇ) ଦେଖିଲ ଏଡ୍‌ୱାର୍ଡ୍—ମୋ ମା' କମିତି ନୀରବରେ ତା'ର ସମ୍ମତି ଜଣେଇଲା ? ମୁଁ କହୁଥିଲି ନା, ଲିସା ମୋ କଥାରୁ କେବେ ବାହାର ଯିବନି । [ଲିସା ନୀରବରେ କଫି cup ଦୁଓଟି ନେଇ ଗ୍ଲଲିଗଲା]

ଏଡ୍‌ୱାର୍ଡ୍—You are great, really great. ମୁଁ ଆପଣଙ୍କୁ ଭୁଲ ବୁଝିଥିଲି । ଲିସାକୁ ବି ଭୁଲ ବୁଝିଥିଲି । ମୋତେ କ୍ଷମା କରନ୍ତୁ ।

ଯାଚକ—I don't mind my boy. Young blood କି ନା ? ଏମିତି misunderstand କରିବା ସ୍ୱାଭାବିକ୍ । Now let us settle

the date of your marriage. ଏଇ ଆଗାମୀ ପକ୍ଷଲରେ ହେଲେ କ୍ଷତି କ'ଣ ? ଆଉ ତ ଚଉଦଦିନ ରହିଲା ।

ଏଡ୍‌ଓ୍ୱାର୍ଡ଼୍—ଆପଣ ଯାହା ଠିକ୍ କରିବେ, ମୋର date ବିଷୟରେ କହିବାର ନାହିଁ । ମୁଁ ଯାଏ ମୋର ବନ୍ଧୁମାନଙ୍କୁ ଖବରଟା ଶୁଣେଇଦିଏ ।

[ଏଡ୍‌ଓ୍ୱାର୍ଡ଼୍ ଚାଲିଗଲେ]

ଯାଚକ—(ମନେମନେ ନିଶ୍ଚିନ୍ତ ହୋଇ) ଯା'ହେଉ ଗୋଟାଏ ଚିନ୍ତାଗଲା ।

[ଏତିକବେଳେ ପଛରୁ ଆସିଲେ ଉଇଲସ୍ବମ୍, ସେ ଖୁବ୍ ଗମ୍ଭୀର]

ଉଇଲସ୍ବମ୍—ଏଇ ଟିକକ ଆଗରୁ କଫି ଟେବୁଲ ଉପରେ ଯେଉଁ decisionଟା ହୋଇଗଲା ସେଇଟା କ'ଣ ସତ ଯାଚକ ?

ଯାଚକ—ତୁ ତା'ହେଲେ ସବୁ ଶୁଣିଚୁ ନା ?

ଉଇଲସ୍ବମ୍—ହଁ, ଯେତିକ ଶୁଣିବା ଦରକାର । ତା' ନ ହୋଇଥିଲେ, ତୁମେ ଶେଷପର୍ଯ୍ୟନ୍ତ କଥାଟାକୁ ଲୁଚେଇ ରଖିବାକୁ ଚେଷ୍ଟା କରିଥାଆନ୍ତ । ଏଇଥି ନା ?

ଯାଚକ—ଲୁଚେଇ ରଖିବି କାହିଁକ ? ତା'ଛଡ଼ା ଏଥିରେ ଲୁଚେଇ ରଖିବା କଥା କ'ଣ ଅଛି ? ଝିଅର ବାହାଘର ତ ଦିନେ ନା ଦିନେ ହୋଇଥାଆନ୍ତା । ଆଜି ହଉଚି ।

ଉଇଲସ୍ବମ୍—କେଉଁଦିନ ହେବ ସେଇଟା ବଡ଼କଥା ନୁହେଁ । କାହା ସାଙ୍ଗରେ ହବ—ସେଇଟା ବଡ଼ କଥା ।

ଯାଚକ—(ବିରକ୍ତିରେ) ତୁ କ'ଣ କହିବାକୁ ଚାହୁଁ ?

ଉଇଲସ୍ବମ୍—ଏଡ୍‌ଓ୍ୱାର୍ଡ଼୍ ସହିତ ଲିସାର ବାହାଘର ହୋଇପାରେନା ।

ଯାଚକ—ମଦ ନିଶାଟା ମୁଣ୍ଡକୁ ଖୁବ୍ ଚଢ଼ିଯାଇଚି ଜିଷ୍ଟସ୍ ।

ଉଇଲସ୍ବମ୍—ତମେ ଜାଣିରଖ, ମୁଁ ମଦ ଖାଇବା ଛାଡ଼ିଦେଇଛି । ସବୁବେଳେ ମୋତେ ମଦ ଖୁଆଇ ମୋ ମୁଣ୍ଡଟାକୁ ତମେ ଖାଇଦେଇଥିଲ, ପଶୁଭଳି

ସୁକୁମାର ମୋ'ଠୁ ଯା'ହା ଚାହୁଁଥିଲ ତା' ଆଦାୟକର ନେଉଥିଲ । ମୁଁ ଥିଲି ମଦର ଗୋଲାମ୍—ଡମର ଗୋଲମ୍ । ଆଜି କିନ୍ତୁ ମୁଁ କାହାର ଗୋଲାମ୍ ନୁହେଁ ।

ଯାଚକ—ଉଇଲିୟମ୍ ତୋର ମନେରଖିବା ଉଚିତ, ତୁ କାହା ସାଙ୍ଗରେ ଯୁକ୍ତିତର୍କ କରୁଚୁ ।

ଉଇଲିୟମ୍—ମନେଅଛି; କିନ୍ତୁ ମୋ'ର ଆଖି ଆଗରେ ଗୋଟାଏ ନିରୀହ ଝିଅକୁ ତା'ର ଇଚ୍ଛାବିରୁଦ୍ଧରେ ତମେ ବଳିଦେବ—ତା' ମୁଁ ଦେଖିପାରିବ ନାହିଁ ।

ଯାଚକ—ପାଗଳାମି କରିବାକୁ ଆଉ ଜାଗା ମିଳିଲାନି ? ଯା', ଲିସାକୁ ପଚାରି ଦେଖ, ଏଡ୍‌ଓ୍ୱାର୍ଡ଼କୁ ବାହାହବାକୁ ସିଏ ମତ ଦେଇଛି କି ନାହିଁ ।

[ରାଗରେ ଯାଚକ ଉଠି ଚାଲିଗଲେ]

ଉଇଲିୟମ୍—ଠିକ୍‌ଅଛି, ମୁଁ ତାକୁ ନିଜେ ପଚାରିବି । (ବଡ଼ପାଟିରେ ଡାକନ୍ତି) ଲିସା, ଲିସା ଟିକିଏ ଶୁଣିଲୁ ମା' ।

[ଲିସା ଆସି ମାଉସାଙ୍କର ତଳକୁ ମୁହଁକରି ଛିଡ଼ାହେଲା]

ଉଇଲିୟମ୍—ମୁଁ ତୋ'ର ମୁହଁରୁ ଶୁଣିବାକୁ ଚାହେଁ, ତୋ ଡ୍ୟାଡ଼ି ଯାହା କହିଲେ ସେ କ'ଣ ସତ ? କହ ଲିସା କହ । ମୋ ଆଗରେ କିଛି ଲୁଚାନା ମା', ଏଡ୍‌ଓ୍ୱାର୍ଡ଼କୁ ବାହାହବାକୁ ତୁ ସତରେ ମତ ଦେଇଛୁ ?

ଲିସା—ମୋ'ର ଆଉ କ'ଣ ଉପାୟ ଅଛି ଅଙ୍କଲ ।

ଉଇଲିୟମ୍—କାହିଁକି ? କ'ଣ ହେଇଚି ତୋର ? ତା'ହେଲେ ତୁ କ'ଣ ତୁଷାରକୁ ଭୁଲିଯାଇଛୁ ?

ଲିସା—ହଁ ଅଙ୍କଲ, ମୁଁ ସବୁ ଭୁଲିଯାଇଚି, ମୁଁ ସବୁ ଭୁଲିଯାଇଚି ।

[ ଶିଶୁଭଳି କାନ୍ଦିଉଠିଚି ଲିସା । ଉଇଲିୟମ୍ ତାକୁ ନିଜ କ୍ରୋଡ଼ରେ ଆଉଜେଇ ନେଇଛନ୍ତି ! ]

## ଷଷ୍ଠ ଦୃଶ୍ୟ

[ ଯାଚକଙ୍କ Guest houseର ଅଳନ୍ଦ ।
ସମସ୍ତ ସକାଳ । ବାହ୍ବାରୁ କେହ୍ବଜଣେ
ବଡ଼ପାଟିରେ ସରୋଜ ନାମଧରି ଡାକଚ ।
ହାତରେ ସକାଳର ଖବରକାଗଜ ଧରି ଭିତରୁ
ପ୍ରବେଶ କଲେ ସରୋଜ ବାବୁ । ପରିଧାନରେ
ସ୍ଲିପର ନାଇଟ୍ ଗାଉନ୍ । ]

ବାହ୍ବାରୁ—ସରୋଜ ବାବୁ, ସରୋଜ ବାବୁ, ସରୋଜ ବାବୁ ଅଛନ୍ତି ।

[ ସରୋଜ ସିଗାରେଟ୍ ଦୋକାନୀର ଚିହ୍ନା ଗଳାବାରି ବାହ୍ବାରକୁ ଗୁହିଁ ଦେଖିଚ । ସତକୁ ସତ ସିଗାରେଟ୍ ଦୋକାନୀକୁ ଦେଖିପାରି ହଠାତ୍ ଖବର କାଗଜରେ ମୁହଁଘୋଡ଼ାଇ ଗଳା ପରିବର୍ତ୍ତନ କରି କହୁଛି । ]

ସରୋଜ—ସରୋଜ ବାବୁ ନାହାନ୍ତି । ଯାତଦନପାଇଁ ବାହାରକୁ ଯାଇଛନ୍ତି ।

[ଏତିକବେଳେ ଯୋସେଫ୍ ଭିତରୁ ଆସୁଥିଲା, ସେ କହୁ କିଛି ବୁଝି ନ ପାରି କହୁଛି]

ଯୋସେଫ୍—Sir, present sir.

ସରୋଜ—(ଯୋସେଫ୍କୁ ଚୁପ୍‌କରିବାକୁ ଇଙ୍ଗିତ କରି ଆସ୍ତେଆସ୍ତେ କହୁଲେ) ଚୁପ୍‌ଚୁପ୍—ସିଗାରେଟ୍ ଦୋକାନୀ ବାକି ପଇସା ମାଗିବାକୁ ଆସିଛି । ଦେଖିଲୁ ଗଲାଣି କି ନାହିଁ ।

ଯୋସେଫ୍—(ବାହାରକୁ ଦେଖି) Gone sir.

ସରୋଜ—ଓହୋ, ମଣିଷ ବଞ୍ଚିଗଲା । ଆଜି ସକାଳୁ ସକାଳୁ ଧରିଥାଆନ୍ତା ମତେ । My god. ସବୁ main ରୋଡ଼ ତ ବନ୍ଦ । ଏଥର ଗୋଟାଏ ଗଳିରାସ୍ତା ଥିଲା—ସେଇଟା ବି ବନ୍ଦ ହୋଇଗଲା । ଏଇମିତି ଧାର ବାକିକରି କେତେଦିନ ମଣିଷ ଚଳିବ ?

ଯୋସେଫ୍—Why credit sir ?

ସରେ୍ୱଜ—ଆରେ ଇଡ଼ିଅଟ୍, ନିଜପାଇଁ କେହି କ'ଣ କେଡ଼ିଟ୍ କରେ ? ସବୁ ସେଇ ଝିଅମାନଙ୍କପାଇଁ, ମଣିଷ କରିବ କ'ଣ ? ସୁନ୍ଦରୀ ଝିଅମାନଙ୍କ ପାଖରେ ଯୋଉ କମ୍ପିଟିସନ୍ ! ଝିଅମାନଙ୍କ ବାପ ମାଆ ବି ଆଗ ପରଖିନେବେ—ତମ ପକେଟଟା ଖାଲି କି ଭରି ଅଛି । ତମେ ଭବିଷ୍ୟତରେ କଉଣି ହବ କି I. A. S. ପାଇବ, କ'ଣ କିଛି ବୁଝିଲୁ ?

ଯୋସେଫ୍—Nothing sir.

ସରେ୍ୱଜ—ତୋ ପାଖରେ କିଛି କହିବା ମାନେ—କାଳ ଆଗରେ ମୂଳା ଖୁଆଇବା । ଯା'—ଗଲୁ ଏଠୁ ।

ଯୋସେଫ୍—(ଯୋସେଫ୍ ଚାଲିଯାଉଥିଲା । ହଠାତ୍ ଫେରିଆସି, ପକେଟରୁ ଖଣ୍ଡେ କାଗଜ କାଢ଼ି ସରେ୍ୱଜଙ୍କୁ ବଢ଼େଇଦେଇ କହିଲା) Notice sir, your sir.

ସରେ୍ୱଜ—କି ନୋଟିସ୍ ? (କାଗଜଟା ପଢ଼ି) ଓ ବୁଝିଲି meal stop notice !!! ସରିଲା, କଥା ସରିଗଲା । ଏଠି ବି ମିଲ stop, ମଣିଷ କୁଆଡ଼େ ଯିବ ? ପାର୍ଟି, ପିକ୍‌ନିକ, ଡିନର, ଡ୍ୟାନସ୍ ସବୁ ବନ୍ଦ ।

[ବାହାରୁ ଆସିଲେ ଏଡ୍‌ଓ୍ୱାର୍ଡ଼]

ଏଡ୍‌ଓ୍ୱାର୍ଡ଼—What the hell you are speaking ? ଆପଣ କ'ଣ ଭାବିଛନ୍ତି ଏଡ୍‌ଓ୍ୱାର୍ଡ଼ ଗୋଟାଏ ordinary ଲୋକ ? ତା'ର marriage ceremonyଟାକୁ ଆପଣମାନେ ଯେମିତି-ସେମିତି ଚଳେଇ ଦେବେ ।

ସରେ୍ୱଜ—Congratulation Mr. Edward, ଶୁଭ ଖବରଟା ଶୁଣିଲି ! ତେବେ କାହା ସାଥିରେ ହେଉଛି ।

ଏଡ୍‌ଓ୍ୱାର୍ଡ଼—ଆଉ କାହା ସାଥିରେ ? ଲିଜା ସାଙ୍ଗରେ ।

ସରେ୍ୱଜ—ଓ, ଆମ Lisa ସାଙ୍ଗରେ ? You are lucky Mr. Edward !!! ଆପଣଙ୍କ Father-in-law ଶୁଣିଛନ୍ତି functionରେ ଗୁଡ଼ାଏ ବାଜେ ଖର୍ଚ୍ଚ ନ କରିବାକୁ ।

ଏଡ୍‌ଓ୍ୱାର୍ଡ଼—ଡ୍ୟାମ୍ that old man. ମୋ ଇଚ୍ଛା ଯେତେ ପାରିବ ସେତେ ଖର୍ଚ୍ଚ ହେଉ । functionଟା ଲୋକେ ଯେମିତି ଚିରଦିନପାଇଁ ମନେ ରଖିବେ । ଖର୍ଚ୍ଚ କଥା ପଚାରିବାକୁ ସେ କିଏ ? I want a lavish function.

ସନ୍ତୋଷ—Fantastic idea. ମୁଁ ମାନୁଛି ଟଙ୍କା ଆପଣଙ୍କର, ଖର୍ଚ୍ଚ କରିବାର ସ୍ୱାଧୀନତା ବି ଆପଣଙ୍କର ଅଛି; ହେଲେ ମିଷ୍ଟର ପାଟକଙ୍କୁ displease କରିବାଟା ଭଲ ନୁହେଁ ବରଂ କାମଟାକୁ tactfully manage କଲେ ଆପଣ ଖୁସି, ସିଏ ବି ଖୁସି ।

ଏଡ୍‌ଓ୍ୱାର୍ଡ଼—What do you mean ?

ସନ୍ତୋଷ—ମିଷ୍ଟର ପାଟକ ଜାଣିବେ ନାହିଁ, ଅଥଚ ଆପଣ ଯାହା ଗୃହୁଁଚନ୍ତି ସବୁ ଠିକ୍ ହେଇଯିବ—ଏଇ ହେଉଚି policy । ଆପଣ କ'ଣ ଚାହାନ୍ତି ମୋତେ ଗୋଟିଗୋଟିକରି କହନ୍ତୁ ତ, ମୁଁ ସବୁ tip-top କରିଦେବି ।

ଏଡ୍‌ଓ୍ୱାର୍ଡ଼—ମନେହଉଚି ଆପଣଙ୍କର marriage celebration ନେଇ ବେଶ୍ experience ଅଛି ।

[ଏଇ ସମୟରେ ବାହାରୁ ଆସିଚି ହରଦୀପ]

ହରଦୀପ—Marriage ନେଇ ସନ୍ତୋଷ ବାବୁଙ୍କ experience କଥା ପଚାରୁଛନ୍ତି ? ସେ ଅବଶ୍ୟ ନିଜେ ବାହାହୋଇ ନାହାନ୍ତି, ମାନେ ଏପର୍ଯ୍ୟନ୍ତ କୌଣସି ଝିଅ ତାଙ୍କୁ ବାହାହବାପାଇଁ ଆଗେଇ ଆସିନାହାନ୍ତି । ତେବେ ବାହାଘର ନେଇ ଡକ୍ଟରେଟ୍ ପାଇଲାଭଳି Thesisଟିଏ ଲେଖିବାର ଅଭିଜ୍ଞତା ତାଙ୍କର ଅଛି ।

[ହରଦୀପ୍ କଥାରେ ଏଡ୍‌ଓ୍ୱାର୍ଡ଼ ସନ୍ତୋଷ ହାତଧରି କହିଲେ]

ଏଡ୍‌ଓ୍ୱାର୍ଡ଼—Is it so ? You have saved me. ଆପଣ ମୋତେ ବଞ୍ଚେଇ ଦେଲେ । ମୋର ବାହାଘର ଆଉ ବା କେତେଟା ଦିନ ରହିଲା କି ଯେ ଝାମେଲା । କାମ କରିବାକୁ କେହି ନାହାନ୍ତି । ଯାହା କରିବ

ଏଡ଼ଓ୍ୱାର୍ଡ଼ । ଯୋଉ କାମରେ ଯିବ ଏଡ଼ଓ୍ୱାର୍ଡ଼ । ସମସ୍ତଙ୍କ ମୁହଁରେ ଏଡ଼ଓ୍ୱାର୍ଡ, ଏଡ଼ଓ୍ୱାର୍ଡ଼, ଏଡ଼ଓ୍ୱାର୍ଡ଼ । Tell me how can I manage all this alone.

ସତ୍ୟେନ—Health ଖରାପ ହୋଇଯିବ ଆଜ୍ଞା, health ଖରାପ ହୋଇଯିବ, ଆପଣଙ୍କର । ବର୍ତ୍ତମାନ କେବଳ rest ନେବା କଥା ଆପଣଙ୍କର ।

ଏଡ଼ଓ୍ୱାର୍ଡ଼—I am fed-up. ଏସବୁ ଝାମେଲା ନେଇ ମୁଁ rest ନେଇପାରୁଛି କୋଉଠି ?

ହରଦୀପ—ଆପଣ ସତ୍ୟେନ ବାବୁଙ୍କ ଉପରେ ସବୁ ଦାୟିତ୍ୱ ଦେଇ···ନିଶ୍ଚିନ୍ତରେ ଶୋଇଯାଆନ୍ତୁ ନା, ଦେଖିବେ ।

ସତ୍ୟେନ— ଦେଖିବେ ଆପଣଙ୍କର ବାହାଘର ସାଇ Honey-moon ଚାଲିଯିବ ଅଥଚ ଆପଣ କିଛୁ ଜାଣିବେ ନାହିଁ ।

ଏଡ଼ଓ୍ୱାର୍ଡ଼—(ଚମକିପଡ଼ି) What do you mean ? ମୋର honey-moon ଚାଲିଯିବ; ଅଥଚ ମୁଁ ଜାଣିପାରିବି ନାହିଁ ?

ସତ୍ୟେନ—ନା, ନା ସାର୍ । ମୁଁ କହୁଥିଲି କ'ଣ କି ଆପଣଙ୍କର honey-moon ଚାଲିଯିବାଯାଏ ଆପଣଙ୍କ ପାଖରେ କୌଣସି ଝାମେଲା ପହଞ୍ଚିବ ନାହିଁ ।

ଏଡ଼ଓ୍ୱାର୍ଡ଼—That's nice idea. Exactly ମୁଁ ସେଇଆ ଚାହେଁ । Let me advance you some cash and you manage all these, for me. I mean on my behalf.

[ପକେଟରୁ ଶହେ ଟଙ୍କାର ଗୋଟିଏ ନୋଟ୍‌ବିଡ଼ା ଦେଇଦେଲେ]

(ସତ୍ୟେନ ଟଙ୍କାତକ ପକେଟ୍‌ରେ ରଖୁରଖୁ) ନା, ନା ଟଙ୍କା କ'ଣ ହବ ? ଖାଲି ଆପଣଙ୍କର idea ଗୁଡ଼ା କହିଦେଲେ ଯଥେଷ୍ଟ ହେବ । ସେତିକି ନେଇ ଆପଣଙ୍କର functionଟାକୁ କେମିତି successful କରୁଛି ଆପଣ ଦେଖିବେ ।

ହରଦୀପ—ସିଏ ଦେଖିବେ କ'ଣ ? ଦେଖିବା ଲୋକ ତ, friends, relatives, public.

ଏଡ୍‌ଓ୍ୱାର୍ଡ଼—Yes, I wish them to see a unique marriage ceremony. ଏଇ ଧରନ୍ର wedding card କଥା । ମୁଁ ଗୃହୁଁଛୁ best of imported କାର୍ଡ଼ ଛପେଇବା କଥା ।

ହରପ୍ରସାଦ—ଖାଲି ସେତିକି ନୁହେଁ ସାର୍, ଖୁବ୍ ଭଲ pressରେ ବ ଛପାଇବା ଦରକାର ।

ସତ୍ୟେନ—ମୁଁ ତ ଗୃହୁଁଛୁ—ସେଥିରେ ଆପଣଙ୍କର ଆଉ ଲିଜାର ଦୁ'ଟା ଫଟୋ ଦେଇଦବାକୁ ।

ଏଡ୍‌ଓ୍ୱାର୍ଡ଼—Wonderful idea.

ହରପ୍ରସାଦ—ଏଇ ଗୋଟାଏ କ'ଣ ? ସତ୍ୟେନ ବାବୁଙ୍କ ମୁଣ୍ଡରେ ଏମିତି ଅନେକ ନୂଆନୂଆ idea ଅଛି । ଖାଲି ଖୋଲି ହ'ଉରେ ଖର୍ଚ୍ଚ କଲେ ହେଲା ।

ସତ୍ୟେନ—ଆରେ idea ଥିଲେ କ'ଣ ହେବ ? ସେଗୁଡ଼ାକ apply କରିବାକୁ chance ଦଉଚ କଏ ? ତା'ପରେ ସେମିତି ଟଙ୍କା ଖରଚ କରିବାକୁ ତାକତ୍ ଥିବା ଦରକାର ।

ଏଡ୍‌ଓ୍ୱାର୍ଡ଼—Now you have money in your pocket. Proceed on, ଆଗେଇ ଯାଆନ୍ତୁ । Let me see you busy, ଆଉ ଟଙ୍କା ଦରକାର ହେଲେ ମୋ'ଠୁ ମାଗିନେବେ ।

[ଲହୁକହୁ ଗ୍ଲଲିଗଲେ]

ହରପ୍ରସାଦ—ସେଥିପାଇଁ ସାର୍ ଆପଣଙ୍କର କହିବା ଦରକାରନାହିଁ । ଟଙ୍କା ମାଗିନବାରେ ସତ୍ୟେନ ବାବୁଙ୍କର shyness ଆଦୌ ନାହିଁ, ବରଂ କହିବାକୁ ଗଲେ ସେ ବିଷୟରେ ସେ ନିର୍ଲଜ କହିପାରନ୍ତି ।

ସତ୍ୟେନ—(ପଛଆଡ଼ୁ ହାତବଢେଇ, ସତ୍ୟେନର ପାଟିଟାକୁ ଚିପିଧରିଲା) Shut up.

ହରପ୍ରସାଦ—କ'ଣ ମିଛ କହିଲି ?

ସତ୍ୟେନ—ନା, ସତ କହୁଛୁ; ହେଲେ ଏମିତି ଜୋରରେ ପାଟିକରି କହିବାଟା—ଉଚିତ ନୁହେଁ । ବିବାହର ଏଇ ପବିତ୍ର ଲଗ୍ନଟାରେ ସବୁ ପଦ secret.

(ସ୍ୱର୍ଗିବ—ପ୍ରବେଶକରି) ବବାହ !!! ଦୁଇଟି ଦେହର ନୁହେଁ । ଦୁଇଟି ଆତ୍ମାର ମିଳନ । ଯୁଗଯୁଗର ଦୁଇଟି ତୃଷିତ ଅଶାନ୍ତ ଆତ୍ମା—ଦୁଇଟି ଦେହର ବନ୍ଧନ, ହୃଦୟର ପୁଞ୍ଜିଭୂତ କାମନା—ତାକୁଇ ଗୋଟିଏ ସୂତ୍ରରେ ଛନ୍ଦିଦେବାପାଇଁ ଏଇ ବବାହ ।

ହରପୀପ—ମୋ ଧାର ଟଙ୍କାଟା ଆଗେ ଛୁଡ଼େଇଦେଲୁ ଭାଇ !

ସରୋଜ—ଟଙ୍କା ?

ହରପୀପ—ଆରେ ତୋ'ଠୁ କିଛି କମିଶନ ଚାହୁଁନି । ମୋ'ଠୁ ଯୋଉ ଟଙ୍କା ତୁ ଧାର ନେଇଥିଲୁ—ସେଇଟା ଆଗେ ଶୁଝିଦେଲୁ ଭାଇ । ପକେଟ୍ ତ ଗରମ ଅଛି ।

ସରୋଜ—ଛିଃ, ତୁ କ'ଣ ଭାବୁଛୁ ଏସବୁ ମୋର ଟଙ୍କା ? ପର ଟଙ୍କା, ବୁଝିଲୁ ପର ମାନେ ପର । ପର ପଇସା ମୁଁ ଛୁଏଁନା । ସେ ମୋତେ ବିଶ୍ୱାସରେ ଦେଇଛନ୍ତି ପରା ।

ହରପୀପ—ମୁଁ ବି ଦିନେ ବିଶ୍ୱାସରେ ଦେଇଥିଲି । ସମସ୍ତେ ତୋତେ ପରମ ବିଶ୍ୱାସରେ ଦିଅନ୍ତି—ଆଉ ତୁ ଚରମ ବିଶ୍ୱାସଘାତକତା କରି ତାକୁ ଫେରାଉ ନାହିଁ ।

ସରୋଜ—ଟିକିଏ ଅପେକ୍ଷାକର, ଏଇ ବାହାଘର ଝାମେଲାଟା ଟିକିଏ ଛୁଟିଯାଉ ।

ହରପୀପ—ଏମିତି କହିକହି କେତେ ଝାମେଲା ଚାଲିଗଲାଣି ପରା ? ହଉ ମୁଁ କିନ୍ତୁ ମୂଳାସହିତ ସୁଧ ନେବି, କହିଦଉଛି । [ହରପୀପ ଚାଲିଗଲା]

[ସରୋଜ ଖୁବ୍ ସାବଧାନରେ ଟଙ୍କା ପକେଟ୍‌ରୁ କାଢ଼ି ଗଣିବସିଲେ]

ସରୋଜ—ଓଃ, କେତେଦିନ ହେଲା ପକେଟ୍‌ଟା କମିତି ଫାଙ୍କାଫାଙ୍କା ଲାଗୁଥିଲା । ଆଜି ମନେହଉଚି ଏଇଟା State Bank of India, ହେଲେ ରହିବ କୋଉଠି ? ସବୁ ତ ଖର୍ଚ୍ଚ ହୋଇଯିବ । ପାନଦୋକାନୀ, ସିଗାରେଟ୍ ଦୋକାନୀ, ମିଠା ଦୋକାନୀ ସବୁ ତ ଚାହିଁବସିଛନ୍ତି । ରାସ୍ତାକୁ ବାହାରିଲେ

ଧରିବେ । ତା'ଛଡ଼ା ସୀତା, ମିତା, ମମତା, ମଧୁମିତା ପ୍ରଭୃତି ବି ରହିଥିବେ । ଏଇ ସନ୍ଧ୍ୟାରେ ସମସ୍ତଙ୍କୁ ଦେଖାକରିବାକୁ ହେବ ।

ଯୋସେଫ୍—(ଭିତରୁ ଆସି) ସାର୍, ଫୋନ୍ କରିଥିଲା ସାର୍ । ହ'ଥର ଡାକ କହିଲା, ଟଙ୍କା ପାଇଁ; ଆଉ କେତେଜଣ lady ବି ଫୋନ୍ କରିଥିଲେ ।

ସରୋଜ—ଓହୋ, ନାହାନ୍ତି ବୋଲି କହି ମନାକରିଦେଇ ପାରିଲୁନାହିଁ । ହଲେ ladies high heel ଆଣିଥିଲି ଯେ; ହଜାରଥର ତାଗିଦା କଲଣି; ଆଉ ଶୁଣ—ladiesମାନଙ୍କୁ ମନାକରିବୁନାହିଁ । ସେମାନେ ସବୁ V. I. P. । ଖୁବ୍ ମିଠାଗଲାରେ କହିବୁ—Please wait. ସରୋଜ ବାବୁ ଆସିବେ ।

ଯୋସେଫ୍—Sir, ମୁଁ ଠିକ୍ କହିବି ।

ସରୋଜ—ଆଉ ଲଞ୍ଚ ? କ'ଣ ready ?

ଯୋସେଫ୍—Meal stop sir.

ସରୋଜ—କ'ଣ କହିଲୁ ? meal stop ? ମୋର ଆଜି special dish ଦରକାର ।

ଯୋସେଫ୍—Manager, order sir.

ସରୋଜ—Damn your manager. ନେ, ତାକୁ ଏଇ ଟଙ୍କା ଦେଇଦବୁ—କହିବୁ, ସବୁ ହିସାବ ଛୁଡ଼ିଗଲା । ଆଜିଠୁ ମୁଁ ହୋଟେଲରେ ଖାଇବି । ଏଠି ମୋର ଖାଇବା ଦରକାର ନାହିଁ ।

ଯୋସେଫ୍—Yes sir, as you like.

ସରୋଜ—ଓହୋ, ବାକିପାଇଁ ଯୋଉଁ ଗସ୍ତାଗୁଡ଼ା ବନ୍ଦ ଥିଲା, ଆଗେ ସେଗୁଡ଼ାକ payment କରିଦବାକୁ ହବ ।

[ସରୋଜ ଚାଲିଗଲା । ଯୋସେଫ୍ ଟଙ୍କା ହାତରେ ଧରି ବୋକାପରି ଚାହିଁଥିଲା । ]



## ଶେଷ ଦୃଶ୍ୟ

[ପ୍ରଥମ ଦୃଶ୍ୟର ସେହି ବରଫ ପାହାଡ଼; ପୃଷ୍ଠଭୂମିର ସବୁଜ ଉପତ୍ୟକା ଓ ପାଇନ୍ ବନ, ସମସ୍ତ ସନ୍ଧ୍ୟା । ତୁଷାର ତା'ର ସେହି ନିର୍ଦ୍ଦିଷ୍ଟ ସ୍ଥାନରେ ବସି, ଏକୋଲସ୍ବରେ ଭାଓଲିନ୍ ବଜାଇ ଚାଲିଥିଲା । ଆଜି ତା'ର ଭାଓଲିନ୍ କେବଳ କରୁଣ ମୂର୍ଚ୍ଛନା ତୋଳୁଥିଲା । ଏହି ସମୟରେ ପଛରୁ ଆସିଛନ୍ତି ଉଇଲସନ୍ । ବେଶଭୂଷା ବ୍ୟସ୍ତପର୍ଯ୍ୟସ୍ତ । ଉଇଲସନ୍ ଜାଣିଥିଲେ ତୁଷାର ଆଜି ଏହି ସ୍ଥାନକୁ ନିଶ୍ଚୟ ଆସିଥିବ । ତୁଷାରକୁ ଦେଖି ସେ ବିଦ୍ରୂପ କରି କହିବାକୁ ଆରମ୍ଭ କଲେ । ]

ଉଇଲସନ୍—ଭାଓଲିନ୍ ନେଇ ତମର ସେହି ପାଗଳାମି ଆଜିଯାଏ ଗଲାନାହିଁ ! ସେଆଡେ ଯାଅ, ଦେଖିଆସିବ ଲିସାର ବାହାଘରପାଇଁ Hotel the green କେମିତି ଡେକୋରେସନ୍ ହୋଇଛି ।

ତୁଷାର—(ଭାଓଲିନ୍ ବନ୍ଦକରି କହିଲା) ଆପଣ ତ ଦେଖିଛନ୍ତି, ମୋର ଯିବା କ'ଣ ଦରକାର ?

ଉଇଲସନ୍—ଯାହା କୁହ ଏଡ଼ଓ୍ୱାର୍ଡ଼ ପିଲାଟା ଚମତ୍କାର । ଖାଲି ଲିସାର ceremonial ଗାଉନ୍‌ଟାରେ କେତେ ଖର୍ଚ୍ଚ କରିଛି ଜାଣ ? ତିନି ହଜାର ।

ତୁଷାର—ଆଶ୍ଚର୍ଯ୍ୟ ହେବାର ତ କିଛି ନାହିଁ । ଯାହାର ଟଙ୍କା ଅଛି, ଖର୍ଚ୍ଚ କରିବାର ସ୍ୱାଧୀନତା ବି ତାର ଅଛି ।

ଉଇଲସ୍ସମ୍—ଆରେ ନା, ନା, exactly ସେସ୍ୱା ନୁହେଁ । ବଡ଼ କଥା ହେଉଛି teste, ଏଡ୍‌ଓ୍ୱାର୍ଡ଼ ଭଳି broad minded ପିଲା ତମେ ପାଇବନି । ଯାହା arrangement କରିଛି fantastic । ଶୁଣିଲି ତମର ସେହି functionରେ ଆଜି ଖ୍ୱଓ୍ଲାନ୍ ବଜାଇବାର ଅଛି ?

ତୁଷାର—ନାଁ, ସେ ଅଫର ମୁଁ cancel କରିଦେଇଛି ।

ଉଇଲସ୍ସମ୍—କାହିଁକି ?

ତୁଷାର—ସେଟା ଥିଲା ମିସେସ୍ ଖାନ୍‌ଙ୍କ ମଧ୍ୟସ୍ଥତାରେ ଏଡ୍‌ଓ୍ୱାର୍ଡ଼ଙ୍କ ଚକ୍ରାନ୍ତ । ପରେ ଜାଣିପାରି Advance ଟଙ୍କାଟା ଫେରାଇଦେଇଛି ।

ଉଇଲସ୍ସମ୍—ମୁଁ କହିବି ଏଇଟା ତୁମର ବୋକାମି । ୧୦୦୦ଟଙ୍କାର contract କିଏ ଏମିତି ହାତରୁ ଛାଡେ ? ତା'ଛଡା ଏଡ୍‌ଓ୍ୱାର୍ଡ଼ ଯେମିତି moodରେ ଅଛି ନା ମୋଟା ବକ୍‌ସିସ୍ ମିଳିଥାନ୍ତା ।

ତୁଷାର—(ସହ୍ୟଂକରି ନ ପାରି ଚିତ୍କାରକରି କହୁଛି) ଆପଣ କ'ଣ ଭାବୁଛନ୍ତି ଟଙ୍କାଟା ଜୀବନରେ ସବୁଠାରୁ ବଡ଼ ?? ମୋ ମା' ବର୍ତ୍ତମାନ ଭଲ ହୋଇଯାଇଛନ୍ତି । ମୋ ଜୀବନରେ ଆଜି ଆଉ ଆଗଭଳି ପ୍ରଚୁର ଟଙ୍କାର ଜରୁରୀ ଦରକାର ନାହିଁ । ଟଙ୍କାଠୁ ଅନେକ ବଡ଼ ମୋର ଆଦର୍ଶ ।

ଉଇଲସ୍ସମ୍—ହୋଇପାରେ (ତାଚ୍ଛଲ୍ୟକରି) କିନ୍ତୁ ସେମିତି ଆଦର୍ଶର ପରିଚୟ ତ ତମେ କେବେ ଦେଇନା ତୁଷାର ।

ତୁଷାର—ରହିଗଲେ କାହିଁକି କୁହନ୍ତୁ ନା ? ଆପଣଙ୍କ ଆଇନାର ନିଜ ଛବି ଦେଖିବାର ସୁଯୋଗ ହୁଏତ ଆଉ ଆସି ନ ପାରେ ।

ଉଇଲସ୍ସମ୍—ମନେଥିବ ତୁଷାର, ଲିସାର ଛଳଛଳ ଆଖି, ଦିନେ ମୋତେ ଟାଣିନେଇଥିଲା ତମର ପାଖକୁ । ମିସେସ୍ ଖାନ୍ ହାତରୁ ମୁଁ ତୁମର ପ୍ରାପ୍ୟ ଟଙ୍କାଟା ଆଦାୟ କରିଦେଇଥିଲି ଧମକଦେଇ, ହୁଏତ ତମକୁ ରକ୍ଷାକରିଥିଲି ନିଶ୍ଚିତ ବିପଦ ମୁହଁରୁ; କିନ୍ତୁ ସେଦିନ ତମେ ମୋତେ

ଯେମିତିଭାବେ ଅପମାନ ଦେଇଥିଲ ସେଇ କ'ଣ ତମ ଆଦର୍ଶର ପରିଚୟ ।

ତୁଷାର—ତା'ପୂର୍ବରୁ ଆପଣ ମନେପକାନ୍ତୁ, ଆପଣ ମଧ୍ୟ Guest houseରୁ ବାହାର କରିବା ବେଳେ ଯେଉଁ ବ୍ୟବହାର ଦେଖାଇଥିଲ ତା'ବିନିମୟରେ ମୋ'ଠାରୁ କିଛି ଆଶା କରିବା ଭୁଲ ।

ଉତ୍କଳସ୍ୱମ୍—ହଁ, ଭୁଲଟା ମୋର । ସେଦିନ ତମପାଇଁ ମୋ ମନରେ ଥିଲ ଅପରିମ ସ୍ନେହ ମମତା; କିନ୍ତୁ ମୁଁ ଜାଣି ନ ଥିଲି ଟଙ୍କାପାଇଁ ରାତିରାତି ଜାଗି ଯିଏ hotelରେ ଈଓଲିନ୍ ବଜାଏ ତା'ପାଖରେ ସ୍ନେହ ମମତାର ମୂଲ୍ୟ କିଛି ନୁହେଁ ।

ତୁଷାର—ସେ ମୂଲ୍ୟ ଆପଣ କ'ଣ ବୁଝନ୍ତି, ବାପ ମାଙ୍କ ପାଞ୍ଚଟା ଟଙ୍କାର ମଦପାଇଁ Daddyଙ୍କ ଆଗରେ ଯେ, ଗୋଡଭାଙ୍ଗ ଠିଆହୁଏ, ରାତି ସନ୍ଧ୍ୟାରେ ମଦ ନିଶାରେ ମାତାଲହୋଇ ଯିଏ ନିଜଘର ମଣିଷ ପିଠିରେ ନିର୍ଯାତନାର ଚାବୁକ୍ ଚଳାଏ ତା'ଆଗରେ ଏସବୁ ସୂକ୍ଷ୍ମ ଅନୁଭୂତିର ବିଶ୍ଳେଷଣକରି ଲାଭ କ'ଣ ?

ଉତ୍କଳସ୍ୱମ୍—କହିପାର ମୁଁ ମାତାଲ, ମୁଁ ପଶୁ, କିନ୍ତୁ ସେଦିନ ତମ ପାଖରୁ ଫେରି ନିଶାକୁ ମିଛ କହୁଛି । କହୁଛି, ତୁଷାର ଦ ବିଲେଇ ଗୁଣ୍ଡ ସମ୍ପତ୍ତି ଛାଡ଼ିଯାଉଛି; କିନ୍ତୁ ଡିସେମ୍ବର ୩୧ ତାରିଖ ରାତି programmeରେ Hotel the greenର publicityରେ ତମ ନାମ ଯେତେବେଳେ ପ୍ରକାଶ ପାଇଲା ସେଦିନ ଏଡ୍‌ଓ୍ୱାର୍ଡ୍‌କୁ ନେଇ ନିଜେ ଲିସା ଯାଇଥିଲ ହୋଟେଲକୁ କେବଳ ତମର ଦେଖାପାଇବ ବୋଲି । ତମର ପାଦତଳେ ନିଜକୁ ଓଜାଡ଼ିଦେବ ବୋଲି (ତୁଷାର ମୁହଁ ବୁଲାଇଦେଇଛି ଅନ୍ୟ ଦିଗକୁ) କିନ୍ତୁ ତମେ କ'ଣ କରିଛ ? ସେହି ଅସହାୟ ଝିଅଟିକୁ ତୁମେ ଯେଉଁ କଷ୍ଟରୁ ଆଘାତ ଦେଇଛ ସେଇଟା କ'ଣ ତୁମ ଶିଳ୍ପୀ ମନର ପରିଚୟ ? ତୁଷାର, ମୁଁ କହିବି ତୁମେ ଶିଳ୍ପୀ ନୁହଁ even ମଣିଷ ବି ନୁହଁ ।

ତୁଷାର—(ସହ୍ୟକରି ନ ପାରି) please stop !

ଉଇଲିୟମ୍—ମୋ ମୁହଁରୁ ତମେ ଆଜି ଏତିକି ଶୁଣିପାରୁନା, ମନେପକାଅ ସେଦିନ ତମେ ଲିସାକୁ କ'ଣ ନ କହିଛ···ଆଜି ମୁଁ ଚାହୁଁନି ସେସବୁ କହି ତୁମ ମନରେ ଆଘାତ ଦେବାକୁ, ବରଂ ମୁଁ କହୁଛି ଯଦି ପଥର ହୋଇଛ ଭଲକରି ହୁଅ ।

ତୁଷାର—ହଁ, ମୁଁ ପଥର ହୋଇଛି, ଆପଣ, Daddy ଆଉ ମିସେସ୍ ଖାନ୍ ସମସ୍ତେ ମିଶି ମତେ ପଥର କରିଦେଇଛନ୍ତି । ପ୍ରତି ମୁହୂର୍ତ୍ତିରେ ମୁଁ ଅନୁଭବ କରୁଛି ମୋର ସେହି କୋମଳ ଶିଳ୍ପୀସତ୍ତା ଆଜି ଯେମିତି କେଉଁଠି ଅଜ୍ଞାନ ହୋଇଯାଇଛି ।

ଉଇଲିୟମ୍—That's better । ସେଇଟା ହେଇଯିବା ଉଚିତ୍, smash all your sentiment, smash all your dream, ଫିଙ୍ଗି ଦିଅ ତମର ସେହି ମନର ପ୍ରତିମାକୁ—ଆସ ମୋ ସାଙ୍ଗରେ Hotel the greenକୁ, ମନଇଚ୍ଛା ଫୂର୍ତ୍ତିକରି ଲାଓଲାନ୍ ବଜାଇବ । Drink କରିବ, ଏଡ୍‌ଓ୍ୱାର୍ଡ ଆଉ ଲିସାକୁ ଜଣାଇବ ଶୁଭେଚ୍ଛା ଆଉ ଅଭିନନ୍ଦନ । ଆସ ତୁଷାର କମ୍ ଅନ୍ ।

ତୁଷାର—(ଦୂରେଇଯାଇ) ନା uncle, ନା ମୋ ମନର ନିଷ୍ପାପ କପୋତଟି ଅନେକ ଆଘାତ ପାଇଛି, ସେଦିନର ସେହି ଅନ୍ଧକାର ରାତିର ବରଫ ଝଡ଼ ଭିତରେ ଯେଉଁ ଆଘାତ, ସେ ଆଘାତରେ ତା'ର ଦେଣାରୁ ଜଖମ୍ ଆଜିଯାଏ ଯାଇନାହିଁ । ମୁଁ ଆଉ ତାକୁ କ୍ଷତବିକ୍ଷତ କରିବାକୁ ଚାହେଁନା, ମୁଁ ପାରିବିନି uncle ପାରିବିନି ।

ଉଇଲିୟମ୍—କାହିଁକି ପାରିବନି ? ଲିସା ପାଇଁ ଯଦି ତମ ମନରେ ଟିକେ ହେଲେ ଭଲପାଇବା ନାହିଁ ? ତା'ହେଲେ କାହିଁକି ଯାଇପାରିବ ନାହିଁ ? କାହିଁକି ତମେ ଏହି ଶୁଭ ସନ୍ଧ୍ୟାରେ ସେମାନଙ୍କ ସାଥିରେ ହାତ ମିଳାଇବନି ତମେ କାହିଁକି ?

ତୁଷାର—ସବୁ କହୁଚ କାରଣ ଖୋଜି ପାଇବାର ଅପଚେଷ୍ଟା କରନ୍ତୁ ନାହିଁ uncle ! ମୁଁ ଚାହିଁଲେ ବି ଆପଣଙ୍କୁ ସବୁକଥା କହିପାରିବିନି ।

ଉଇଲିୟମ୍—ମୁଁ ସବୁ ବୁଝିଛି ତୁଷାର, ତମେ କ'ଣ କହିବାକୁ ଚାହିଁ ଅଥଚ କହିପାରୁନା ! ହଜାରେ ଟଙ୍କାର ଅଫର୍ cancelକରି ତମେ ଏଠି ଏକା କାହିଁକି ଭାଓଲିନ୍ ବଜାଉଛ ମୁଁ ବେଶ୍ ବୁଝୁଛି ।

ତୁଷାର—ଆପଣ ଭୁଲ ବୁଝୁଛନ୍ତି uncle । ମୋ ମା' ଏବେ ଭଲ ହୋଇଯାଇଛନ୍ତି, କାଲି ମୁଁ ତାଙ୍କୁ ଏଠୁ ନେଇ ଚାଲିଯିବି । ଆଜି କେବଳ ଶେଷଥରପାଇଁ ଆସିଥିଲି ଏହି ସବୁଜ ପାଇନ୍ ଉଦ୍ୟାନ ଦେଖି ଯିବାକୁ; ଯେଉଁଠି ନଗ୍ରେଲାରେ କଟାଇ ଦେଇଛି ଅନେକ ହିମଶୀତଳ ସାୟାହ୍ନ କେତେ ତୁଷାରଝରା ନିଶୀଥ—ପୂରବୀ, ସୋହନୀ, କଲ୍ୟାଣୀର ମଧୁର ମୂର୍ଚ୍ଛନାରେ ।

ଉଇଲିୟମ୍—ଖାଲି ସେତିକି ନୁହେଁ ତୁଷାର, ଏହି ହିମାଦ୍ରିକୁ ସାକ୍ଷୀରଖି ଏଇ ସବୁଜ ପାଇନ୍ ବନ୍ଷିର ଛାୟା ଆଲୋକର ଲୁଚକାଳି ଖେଳ ଭିତରେ, ଲେଖା ହୋଇଥିଲା ଲିସା ଆଉ ତମ ଜୀବନର ଭଲପାଇବାର ପ୍ରଥମ ସ୍ୱରଲିପି ।

ତୁଷାର—(ଆଖି ଛଳଛଳ କରି) ହଁ, ଆଜି ମୁଁ ଆସିଛି ମଉଳା ଫୁଲଭରା ସେହି ସମାଧି ଉପରେ ଶେଷଥରପାଇଁ ଫୁଲ ଦେଇଯିବାକୁ ।

ଉଇଲିୟମ୍—କିନ୍ତୁ ତୁଷାର ! ଏଇ କ'ଣ ତୁମର ଭଲପାଇବା । ଏମିତି ଭାବରେ ଜଣେ ଯିବ ବବାହିର ଫାଶୀଖୁଣ୍ଟକୁ, ଆଉଜଣେ ପ୍ରେମ ସମ୍ରାଟ୍ 'ନିରୋ'ର ନିର୍ବିକାର ଶୀତଳତା ନେଇ violine ବଜାଇ ବୁଲିବ ? ଦୁଇଟି ଜୀବନର ଆଶା ଆକାଂକ୍ଷା କାମନା କ'ଣ ଏମିତି ଭାବେ ଶେଷ ହୋଇଯିବ ।

ତୁଷାର—ଜଳିଜଳି ନିଃଶେଷ ହୋଇଯିବା ଛଡ଼ା ଦୁଇଟି ଧୂପକାଠିର ପରିଣତି ଆଉ କ'ଣ ହୋଇପାରେ uncle ?

ଉଇଲସ୍ସନ୍—କନୁ କାହିଁକି ? କାହିଁକି ତମେ ଏତେ ଧ୍ୱଜ ? ଏତେ କା'ପୁରୁଷ ? ସମାଜର ଏହି ଲୁହା ପଞ୍ଜରକୁ ତମେ ଭାଙ୍ଗି ଦେଇପାରନା ? ପାରନା ଚକ୍ରାଚକର ? ପାରନା ବିଦ୍ରୋହକର ? ତୁମେ ଏତକ କରିପାରନା ?

ତୁଷାର—(ଲଜ୍ଜିତ ହୋଇ) Uncle !

ଉଇଲସ୍ସନ୍—ପଙ୍ଗୁ ହୋଇ ମୁଁ ଯାହା ଭାବିପାରୁଛି ସୁସ୍ଥସବଳ ମଣିଷହୋଇ ତୁମେ ଭାବିପାରୁନ କେମିତି ?

ତୁଷାର—ପାରିବି uncle । ମୁଁ ସବୁକିଛି କରିପାରିବି ଲିସାପାଇଁ, ମୁଁ ସବୁ କରିପାରିବି । ହେଲେ ବର୍ତ୍ତମାନ ସେ ସମସ୍ତ କାହିଁ ? କାହିଁକି ମତେ ଆଗରୁ ଶୁଣେଇଲେନି ଏହି ମୁକ୍ତିର ସଞ୍ଜୀବନୀ ? କାହିଁକି ମୋ ହାତରେ ଧରାଇଦେଲେନି ବିଦ୍ରୋହର ବହ୍ନିଶିଖା । ଆଜି ଏସବୁ ନେଇ ମୁଁ କ'ଣ କରିପାରିବି ?

ଉଇଲସ୍ସନ୍—ଏବେ ବି ସମୟ ଅଛି । ଏହି ମୁହୂର୍ତ୍ତରେ ପରୁଷର ସମସ୍ତ ଦମ୍ଭ, ଅହଙ୍କାର ନେଇ ଲିସା ଆଗରେ ତୁମେ ଠିଆହୁଅ । ଏବେ ବି ମୋର ବିଶ୍ୱାସ ତମ ଡାକର ଜବାବ୍ ସେ ଦେବ ।

[ ଏହି ସମୟରେ ଲିସାର ବିବାହ ଶୋଭାଯାତ୍ରାର ଅର୍କେଷ୍ଟ୍ରାଧ୍ୱନି କ୍ରମେ ନିକଟରୁ ନିକଟତର ହେବାର ଶୁଣାଗଲା । ଏଇ ଶୁଣ, ଲିସାର marriage processi n church ଆଡ଼କୁ ଯାଉଛି । ଯାଅ ତୁଷାର, ତମେ ବି ଯାଅ । ]

ତୁଷାର—ବର୍ତ୍ତମାନ ମୋତେ ଯାଇ ଲିସା ଆଗରେ ଛିଡ଼ାହେବାକୁ କହୁଛନ୍ତି ।

ଉଇଲସ୍ସନ୍—ହଁ, ତୁମେ ଯାଅ ।

ତୁଷାର—Uncle.

ଉଇଲସ୍ସନ୍—ଆଃ, ଯାଅନା, ଯାଅ କହୁଛି ।

ତୁଷାର—ନା ! (ବ୍ୟାଣ୍ଡପାର୍ଟିର ଧ୍ୱନି କ୍ରମେ ନିକଟରୁ ନିକଟତର ହେବା ଶୁଣାଗଲା, ତା'ଭିତରେ ଆଉ ଉଇଲସ୍ନମ୍ ଆଉ ତୁଷାରର dialogue ଶୁଣାଗଲନାହିଁ କେବଳ ଉଇଲସ୍ନମ୍ ତୁଷାରକୁ ବାଧାକରି ଯିବାକୁ କହୁଥିବା ଏବଂ ସେ ମନା କରିବାର ଅଭିନୟ ଦେଖାଯାଉଥାଏ । ବ୍ୟାଣ୍ଡପାର୍ଟିର ଧ୍ୱନି ହଠାତ୍ ବନ୍ଦ ହୋଇଗଲା । ଏହି ସମୟରେ ବାହାରୁ ବାହାଘର ସାଜସଜ୍ଜାରେ ପ୍ରବେଶ କରନ୍ତି ଲିସା ।)

ଉଇଲସ୍ନମ୍—(ହଠାତ୍ ଲିସାକୁ ଦେଖି) ମା' ତୁ ଆସିଛୁ !

ଲିସା—Uncle.

ଉଇଲସ୍ନମ୍—ମୁଁ ଜାଣିଥିଲି ଲିସା, ଖରସ୍ରୋତା ନଦୀ ପଛରେ କେହି ଛିଡ଼ା ହୋଇପାରିବେନି (ଦିନେ ତା'ର ସୁନ୍ଦର ଦୁଇକୂଳ ଉଛୁଳାଇ ଆସିବ ଦୁରନ୍ତ ବନ୍ୟାର ଜୁଆର । ସେହି ସ୍ରୋତକୁ କେହି ବାଧା ଦେଇପାରିବେନି । ସମସ୍ତ ବାଧାକୁ ଅତିକ୍ରମକରି ସେ ଆଗେଇ ଚାଲିବ ମହାସାଗରର ମିଳନପାଇଁ । (ଏହି ସମୟରେ ବ୍ୟସ୍ତ ବିବ୍ରତହୋଇ ଆସିଛନ୍ତି ଯାଜକ ।)

ଯାଜକ—(ଭିତରୁ) ଲିସା, ଲିସା !

[ ଲିସା ଆଗେଇଯାଇ ଛିଡ଼ାହୋଇଛି ଉଇଲସ୍ନମ୍‌ଙ୍କ ପାଖରେ, ମଞ୍ଚକୁ ପଶିଆସୁଛନ୍ତି ଯାଜକ । ହଠାତ୍ ଉଇଲସ୍ନମ୍‌କୁ ଦେଖି । ]

ଉଇଲିସ୍ନମ୍—ତା'ହେଲେ ଏସବୁ ତୋର ଚକ୍ରାନ୍ତ !!! କିନ୍ତୁ କାହିଁକି ? ମୁଁ ତୋର କ'ଣ କରିଥିଲି ? କାହିଁକି ଲୋକହସା କରଉଛୁ ? ମୁଁ ଦୁନିଆ ଆଗରେ, ସମାଜ ଆଗରେ ମୁହଁ ଦେଖାଇବି କେମିତି । (ଅନୁନୟ ଗଳାରେ) ଦେ' ମୋ ଝିଅକୁ ମୋତେ ଫେରାଇଦେ (ଲିସା ପ୍ରତି) ଆ ମା' ସମସ୍ତେ ସେଠି churchରେ ଅପେକ୍ଷା କରିଛନ୍ତି ।

ଉଇଲସ୍ନମ୍—(ବାଟଓଗାଳି) ନାଁ, ସେ ଯାଇପାରିବନି !!

ଯାଚକ—ଉଇଲସ୍ନମ୍ ! ତୁ ତୁଟ୍ ନୁ ଦେଆଡ଼େ କାହାଘରର ସବୁ ବ୍ୟବସ୍ଥା ହୋଇଯାଇଛୁ···

ଉଇଲସ୍ନମ୍—(ତାଚ୍ଛଲ୍ୟକରି) ହଁ । ନିଜ ହାତରେ ଲିସାକୁ ଫାଶୀଖୁଣ୍ଟରେ ଚଢ଼ାଇବାର ସବୁ ବ୍ୟବସ୍ଥା ତୁମେ କରିଆସିଛ ମୁଁ ଜାଣେ; କିନ୍ତୁ ଏମିତି ଭାବରେ ତୁମ ଖିଆଲର ଶିକାର ହେବାକୁ ମୁଁ ତାକୁ ଦେବିନି ।

ଯାଚକ—(ରାଗିଯାଇ) ଏକଥା କହିବାକୁ ତୁ କିଏ ? ସେ ମୋ ଝିଅ ।

ଉଇଲସ୍ନମ୍—ଚକ୍ରାରକରି ମିଛଟାକୁ ସତ ବୋଲି ଜାହିର କରିବାକୁ ଚେଷ୍ଟା କରନାହିଁ ଯାଚକ । ତୁମ ସହିତ ଲିସାର ସମ୍ପର୍କ ଆଉ କେହି ଜାଣୁ ନ ଜାଣୁ ମୁଁ କିନ୍ତୁ ଠିକ୍ ଜାଣେ !

ଲିସା—Uncle !

ତୁଷାର—ଏସବୁ କ'ଣ ସତ ?

ଯାଚକ—ନା ମିଛ, ସବୁ ମିଛ । ଉଇଲସ୍ନମ୍ ଗୋଟେ ମାତାଲ, ତମେମାନେ ତା'କଥାକୁ ବିଶ୍ୱାସ କରୁଛ ।

ଉଇଲସ୍ନମ୍—ବିଶ୍ୱାସ ନ କଲେ ବି ମୁଁ ଯା କହୁଛି ତାହା ସୂର୍ଯ୍ୟାଲୋକପରି ସତ ।

ଯାଚକ—(ରାଗ ଓ ଅଭିମାନରେ) ଉଇଲସ୍ନମ୍, ତୁ ସେହି ଯୁଦ୍ଧରେ ମରିଯାଇଥିଲେ ଭଲ ହୋଇଥାନ୍ତା ।

ଉଇଲସ୍ନମ୍—ମୁଁ ମରିବାପାଇଁ ଯୁଦ୍ଧକୁ ଯାଇଥିଲି, ଯୁଦ୍ଧ ମୋର ସଉକ ନ ଥିଲା । ମଣିଷ ରକ୍ତରେ ହୋଲି ଖେଳିବାକୁ ମୋର ନିଶା କେବେହେଲେ ନ ଥିଲା, ବରଂ ଯୁଦ୍ଧ ପ୍ରତି ମୋର ଥିଲା ଆନ୍ତରିକ ଘୃଣା; କିନ୍ତୁ ମରିପାରିଲିନାହିଁ । ଆଜି କିନ୍ତୁ, ମୋର କର୍ତ୍ତବ୍ୟ ଶେଷ ହୋଇଗଲା । ଏଥର ତୁମେ ମତେ ମାରିଦେଇପାର । ସେହି ହାତରେ, ଯେଉଁ ହାତରେ ଦିନେ ତୁମେ ଲିସା ମା'ର ତଣ୍ଟି ଚିପି ମାରିଛ···

ଲିସା—(ଚମକିପଡ଼ି) କ'ଣ କହିଲ uncle ମୋ ମା'କୁ···।

[ହଠାତ୍ ଲିସା କାଠ ପାଲଟିଗଲା]

ଯାଚକ—ନାଁ, ସେ ନିଜେ ଆତ୍ମହତ୍ୟା କରିଛି । ମୁଁ ତାକୁ ମାରିନି । ତୁ ମତେ ବିଶ୍ୱାସ କର ମା', ମୋତେ ବିଶ୍ୱାସ କର ।

[ ବର୍ତ୍ତମାନ ଲିସା ଆଉ ଯେମିତି ବିଶ୍ୱାସ କରିବାକୁ ନାରାଜ, ସେ ନିଜ ମୁହଁରେ ହାତଦେଇ ବୁକୁଫାଟି ଭେ-ଭେ କରି କାନ୍ଦିଉଠିଛି । ତୁଷାର ମଧ୍ୟ ଆଖି ବନ୍ଦକରି ମୁହଁ ତଳକୁ କରିଦେଇଛି । ମଞ୍ଚ ଅନ୍ଧାର ହୋଇଯାଇଛି । ତା'ପରେ ସେହି ଅନ୍ଧାର ଭିତରେ ଏକ ଆଲୋକ ରେଖା ଆସି ପଡ଼ୁଛି ଉଇଲିୟମ୍‌ଙ୍କ ମୁହଁ ଉପରେ । ଉଇଲିୟମ୍ କହିବାକୁ ଆରମ୍ଭ କଲେ···]

ଉଇଲିୟମ୍—ଆମେ ତିନିଜଣ ଏକାସାଙ୍ଗରେ ଯାଇଥିଲୁ ଯୁଦ୍ଧକୁ । ମୁଁ, ଯାଚକ ଓ ଲିସା ର ବାପା । ହଠାତ୍ ଦିନେ ଆମ ସ୍କ୍ୱାଡ୍ରଣୀ ଉପରେ ଦେଖାଦେଲେ ଶତ୍ରୁପକ୍ଷର ବିମାନ । ସାଇରନ୍ ବାଜିଉଠିଲା । ତା'ପରେ ଅବିଶ୍ରାନ୍ତ ବୋମା ବର୍ଷଣ, anti aircraft gunର ଗର୍ଜ୍ଜନ । (ନେପଥ୍ୟରେ ଉଡ଼ାଜାହାଜର ସାଇରନ୍ ଓ ବୋମାବର୍ଷଣର ଧ୍ୱନି ଶୁଭୁଥିଲା ସତେ ଯେପରି ଉଇଲିୟମ୍ ସେ ଅତୀତକୁ ଫେରିଯାଇଥିଲେ ।)

ଉଇଲିୟମ୍—ସେଥିରେ ଅନେକ ଆହତ ହେଲେ । ତା'ଭିତରେ ଲିସାର ବାପା ଓ ମୁଁ ଖୁବ୍ ଗୁରୁତର ଭାବେ ଆହତ ହେଲୁ । ବହୁଚିତ୍ରଦିନ ଧରି ଚାଲିଲା ଆମର ଚିକିତ୍ସା । ଯାଚକ କିନ୍ତୁ ଅକ୍ଷତ ଦେହରେ ଫେରିଆସିଲା civil lifeକୁ । ବନ୍ଧୁର ସ୍ତ୍ରୀ ଆଉ କନ୍ୟା ପ୍ରତି କର୍ତ୍ତବ୍ୟର ଛଳନା କରି ସେ ନେଲା ଲିସା ମା'ର ଅସହାୟ ଅବସ୍ଥାର ସୁଯୋଗ । ଲିସା ମା'ର ଅପରୂପ ସୌନ୍ଦର୍ଯ୍ୟ ତାକୁ ପାଗଳ କରିଥିଲା । ସେ ଚରିତାର୍ଥ କରିବାକୁ ଚାହିଁଲା ତା'ର ପାଶବିକ କାମନା । ବାଧାଦେଲା ଲିସାର ମା'; କିନ୍ତୁ ଶେଷପର୍ଯ୍ୟନ୍ତ ସେ ପାରିଲା ନାହିଁ । (ଦୀର୍ଘନିଃଶ୍ୱାସ ଛାଡ଼ି) ସେତିକିରେ ମଧ୍ୟ ନୃଶଂସ ଯାଚକ ଶାନ୍ତ ପାଇଲାନାହିଁ । ନିଜ ପାପର ସାକ୍ଷୀକୁ ନିଶ୍ଚିହ୍ନ କରିବାକୁ ଯାଇ ଶେଷରେ ଦିନେ ନିଜ ହାତରେ ତଣ୍ଟି ଚିପି ହତ୍ୟାକଲା ଏଇ ଯାଚକ । ମଣିଷ ଖୋଲ ଭିତରେ ଗୋଟେ ଜାଅନ୍ତା ସଇତାନ ସେ । ତା'ପରେ ମୁଁ ଆସିଲି ଯୁଦ୍ଧରୁ ଫେରି ହୋଇ । ମଲାବେଳେ ଲିସାର

ବାପା ମୋ ହାତରେ ତା'ସ୍ତ୍ରୀର ଏହି ଚିଠିଗୁଡ଼ାକ ଦେଇଯାଇଥିଲେ । ପ୍ରତ୍ୟେକ ଚିଠିରେ ଲେଖାଥିଲା ସେହି ମର୍ମନ୍ତୁଦ ଅତ୍ୟାଚାରର କାହାଣୀ । (ଯାଚକ ପ୍ରତି) ବୃଦ୍ଧ ଯାଚକ, ଏଗୁଡ଼ା ତୁମେ ଅସ୍ୱୀକାର କରିପାରିବ । ଲିସାର ମା' ମରିଯାଇଥିଲା, ମୁଁ ଆସିଲା ବେଳକୁ ଅସହାୟ ଲିସା ଏକା । ବାଧ୍ୟହୋଇ ମୋତେ ତା'ପାଖରେ ରହିବାକୁ ପଡ଼ିଲା ।

ଲିସା—Uncle (ଆଖିରୁ ଲୁହର ଧାର)

ଉଇଲିୟମ୍—ଆଜି ବି ତୋ ମା'ର ସେହି ଚିଠିଗୁଡ଼ିକ ମୁଁ ଘଡ଼ିଘଡ଼ି ଜାଗି ପଢ଼େ । ମୋ ଆଖି ଆଗରେ ଭାସିଉଠେ ସେ ଅସହାୟ ଜନନୀର ଛବି, ତା'ର କାନ୍ଦ ଶୁଭେ ମୋ କାନରେ । ଘୋର ଅନ୍ଧାରରେ ସେ ଚିତ୍କାରକରି କହେ— "ଯାଚକ, ଫେରାଇଦିଅ ମୋ ଝିଅକୁ । ନ ହେଲେ ମୋ'ଭଳି ତମେ ଦିନେ ତାକୁ ତଣ୍ଟିଚିପି ମାରିଦେବ ।" (ସେତେବେଳକୁ ଲିସା ଆଶ୍ରୟ ନେଇଥିଲା ଉଇଲିୟମ୍ଙ୍କ ଗୁହାରେ, ନାଉଡ଼ିବା ଏକ କପୋତୀ ପରି । ଯାଚକ ପାଗଳ ପରି ହସିଉଠିଲେ । କାରଣ ସତ୍ୟପ୍ରକାଶ ପାଇଯିବାରେ ତା'ମୁଣ୍ଡର ସ୍ନାୟୁତନ୍ତ୍ରୀ ସବୁ ଗୋଳମାଳ ହୋଇଗଲା । ପାଗଳପରି ସେ ପ୍ରଳାପକରି ଚାଲିଥିଲା । ]

ଯାଚକ—(ପାଗଳ ପରି) ତା'ହେଲେ ଲିସାର ମା' ସବୁ ଲେଖିଦେଇ ଯାଇଚି ? ଆଉ ସେହି ଚିଠିଗୁଡ଼ାକ ଅଛି ତୋପାଖରେ ? (ବିନମ୍ରହୋଇ) ଦେ···ଦେ, ମୋତେ ଦେ । ଆରେ ତା'ହେଲେ ତ ସବୁ ପ୍ରମାଣ ହୋଇଯିବ ? ନା କେ ଯେମିତି ଚିଠିଗୁଡ଼ାକ ଦେଖୁଥିବାର ଅଭିନୟ କରି) ତା'ପରେ ହେବ ବିଚାର, ବିଚାର—(ଖୁବ୍ ଜୋରରେ ହସିଉଠି) ହେଲେ ଲିସାର ମା'ତ ଆଉ ଆସି କୋର୍ଟରେ ସାକ୍ଷୀ ଦେବନାହିଁ ? ସେ କେମିତି ଆସିବ ? ସେ ତ ଆସିପାରିବନି । ମୁଁ ଭଲ କରିଛି, ବେଶ୍ କରିଛି । ମୁଁ ନିଜ ହାତରେ ତା'ର ତଣ୍ଟିଚିପି ମାରିଦେଇଛି । ସେ ଆସିପାରିବନି, ସେ ଆସିପାରିବନାହିଁ । ନା···ନା···ସେ ଆସିପାରିବନାହିଁ (ଖୁବ୍ ଜୋର ହସିହସି ଚାଲିଯାଇଛନ୍ତି ଯାଚକ, କିଛି ସମୟ ଲାଗି ସମସ୍ତେ ନିର୍ବାକ ହୋଇପଡ଼ିଛନ୍ତି ।)

ଷ୍ଟଲିୟମ୍—(ଦୀର୍ଘନିଶ୍ୱାସ ପକାଇ, ଦୁଃଖରେ) ସତ ମିଛର ବସ୍ତୁର ଏଇଠି ହୋଇଗଲା ଲିସା—ମୋର କର୍ତ୍ତବ୍ୟ ଏଇଠି ଶେଷ ହୋଇଗଲା । (ଆଖିରେ ଦେଖାଦେଇଛି ଆନନ୍ଦର ରେଖା) ମୋର ଆନନ୍ଦ, ମରୁବାଲିରେ ଶୁଖିଯାଇଥିବା ନଦୀ ସ୍ରୋତକୁ ମୁଁ ଆଣି ପହଞ୍ଚାଇ ଦେଇପାରିଛି ତା'ର ଚିରଆକାଂକ୍ଷିତ ସାଗର ଗ୍ରୁଡରେ । ଆଉ ମୋ ଜୀବନରେ ଘୃହବାର, ପାରବାର କିଛି ନାହିଁ । [ଆଖିରୁ ଲୁହପୋଛି]

ଲିସା—ତୁମେ କାନ୍ଦୁଛ uncle ?

ଉଇଲିୟମ୍—ନାଁ, ମା' ଏଇଟା ମୋର କାନ୍ଦ ନୁହେଁ । ଏଇ ମୋର ଆନନ୍ଦ । ଏହି ଲୁହରେ ଧୋଇହୋଇଯାଉ ତୋର ସବୁ ଗ୍ଲାନି ଓ ସବୁ ଦୁଃଖ । ସେତିକି ହେବ ପଙ୍ଗୁ ଉଇଲିୟମ୍‌ର ବଞ୍ଚିରହିବାର ସାର୍ଥକତା ।

ଲିସା—Uncle !

ଉଇଲିୟମ୍—ମୁଁ ଆଜି ତୋର uncle ନୁହେଁ ମା' । ମୁଁ ଆଜି ତୋର daddy । ବାପାର ହୃଦୟ ନେଇ ମୁଁ ତୋତେ ଆଜି ତୋଳିଦେଇ ଯାଉଛି ତୋ ଚଲାପଥର ସାଥୀ ଏଇ ତୁଷାର ହାତରେ (ତୁଷାର ପ୍ରତି) ତୁଷାର ଏଣିକି ଲିସା ପାଖରେ ତୁମେ, ତୁମେଇ ତାକୁ ବାଟଦେଖାଇବ, ତୁମେଇ ତାକୁ ହାତଧରି ଚଲାଇନେବ ସେ ବାଟରେ । Wish both of you happy days. ଲିସା ଖ୍ରୀଷ୍ଟିୟାନ ନୁହେଁ କି ତୁମେ ହିନ୍ଦୁ ନୁହଁ । ତୁମ ଦୁହିଁଙ୍କର ମିଳନପାଇଁ ବେଦ, ଚର୍ଚ୍ଚ କି priest, ପୁରୋହିତ କିଛି ଦରକାର ନାହିଁ, ଏହି ମିଳନ, ସାଗର ସହିତ ନଦୀର—ମଣିଷ ସହିତ ମଣିଷର ।

[ଉଇଲିୟମ୍ ଅଶ୍ରୁସଜଳ ଆଖିରେ ଦୁହିଁଙ୍କୁ ଆଶୀର୍ବାଦ କରି ବାହାରକୁ ଚାଲିଗଲା ପରେ ତୁଷାର ଲିସା ନିକଟକୁ ଆଗେଇଆସିଲା ।]

ତୁଷାର—(ଲିସା ଆଖିରୁ ଲୁହ ପୋଛିଦେଇ) ଆଜିଭଳି ଦିନରେ ତୁମେ କାନ୍ଦୁଛ ଲିସା ? ନାଁ ତୁମ ଆଖିରେ ମୁଁ ଲୁହ ଦେଖିବାକୁ ଚାହେଁନା, ତୁମେ ହସ, ହଁ ହସ ।

[ଲିସା ଆଖିର ଲୁହ କ୍ରମେ ହସରେ ରୂପାନ୍ତରିତ ହେଲା । ସେ ଲେଟିପଡ଼ିଲା ତୁଷାର ଗ୍ରୁଡରେ । ତୁଷାର ତାକୁ ଆଉଜାଇନେଲା । ପ୍ରଥମ ଦିନର ସେହି ଗୀତଟି ବାଜିଉଠିଲା ଭାଓଲୀନ୍‌ରେ । ]

